# କବିଭୂଷଣ–ସ୍ୱପ୍ନେଶ୍ୱର ଦାଶ

ଲେଖକ : **ଶ୍ରୀ ଦୀପ୍ତିରଞ୍ଜନ ଶେଠ**
ଗ୍ରାମ : ବାବୁବନ୍ଧ
ଡାକଘର : କଳାମାଟି,
ଭାୟା : ସି.ଏ. ଚିପିଲିମା,
ଜିଲ୍ଲା : ସମ୍ବଲପୁର
ପିନ୍– ୭୬୮୦୨୫ (ଓଡ଼ିଶା)

ପ୍ରକାଶକ : **ଦିବ୍ୟ ପ୍ରକାଶନୀ**
ଭୁବନେଶ୍ୱର
ପ୍ରଥମ ସଂସ୍କରଣ : ୨୬ ଜାନୁୟାରୀ, ୨୦୧୩
ପ୍ରଚ୍ଛଦ ଓ ଅଳଂକରଣ : **ଶ୍ରୀ ବିଭୁ ପ୍ରସୂନ ଦାସ**
ମୁଦ୍ରଣ : **ଦିବ୍ୟ ମୁଦ୍ରଣୀ**
୫୮/୬୦, ଦିବ୍ୟ ବିହାର, ସାମନ୍ତରାପୁର, ଭୁବନେଶ୍ୱର–୨, ଓଡ଼ିଶା
ମୂଲ୍ୟ : **₹ ୧୦୦/–**



''ସେଇମାନଙ୍କୁ ସମର୍ପଣ କରୁଛି
ଯେଉଁମାନେ ଆମର ପୁରାତନ କବି
ମନିଷୀଙ୍କ ସମ୍ପର୍କରେ ଜାଣିବାକୁ ଭଲପାଆନ୍ତି ।''

# ମୁଖବନ୍ଧ

କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଓଡ଼ିଆ ସାହିତ୍ୟର ଇତିହାସରେ ଜଣେ ବହୁମୁଖୀ ପ୍ରତିଭାଶାଳୀ–ସାରସ୍ୱତ ଶିଳ୍ପୀ । ସେ ଥିଲେ ଏକାଧାରରେ କବି ଓ ପଣ୍ଡିତ । ସାହିତ୍ୟର ବିଭିନ୍ନ ବିଭାଗରେ ସେ କାମକରି ନିଜର ସ୍ୱତନ୍ତ୍ର ପରିଚୟ ଦେଇ ଯାଇଛନ୍ତି । କିନ୍ତୁ ସ୍ୱପ୍ନେଶ୍ୱରଙ୍କର ଜୀବନୀ ଓ ସାହିତ୍ୟ ସଂପର୍କରେ ବିଶେଷ କିଛି ଆଲୋଚନା ହୋଇ ନଥିବା ଯୋଗୁଁ ସେ ପ୍ରାୟ ପାଠକମାନଙ୍କଠାରୁ ଦୂରେଇ ଗଲେଣି । ସ୍ୱପ୍ନେଶ୍ୱରଙ୍କ ମୃତ୍ୟୁପରେ ତାଙ୍କ ସମଗ୍ର ରଚନାବଳୀର ସଂଗ୍ରହ, ସଂପାଦନା ଓ ସମୀକ୍ଷା ବର୍ତ୍ତମାନ ସୁଦ୍ଧା ସମ୍ଭବ ହୋଇପାରି ନାହିଁ । ଏ ଦିଗରେ କବିଙ୍କ ପରିବାର ପକ୍ଷରୁ ଏହି ଜାତୀୟ କାର୍ଯ୍ୟ ସଂପାଦନା କରିବାର ଆଶା ମଧ୍ୟ କ୍ଷୀଣ । ସେଥିପାଇଁ ତାଙ୍କର ସାମଗ୍ରିକ କୃତିର ଉପଯୁକ୍ତ ମୂଲ୍ୟାୟନ ହୋଇପାରି ନାହିଁ । ପୂର୍ବରୁ ଅଧାପକ ପ୍ରଦୀପ କୁମାର ହୋତା କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କ ସଂପର୍କରେ ଛୋଟବଡ଼ ଦୁଇଟି ଉପାଦେୟ ପ୍ରବନ୍ଧ ଲେଖିଛନ୍ତି । କବି ସ୍ୱପ୍ନେଶ୍ୱରଙ୍କ ଜୀବନୀ ଓ ଆଲୋଚନା ପାଇଁ ଏଗୁଡ଼ିକ କିନ୍ତୁ ଯଥେଷ୍ଟ ନୁହେଁ । ତେଣୁ ଏଭଳି ଜଣେ ସାରସ୍ୱତ ସ୍ରଷ୍ଟାଙ୍କ କାବ୍ୟକୀର୍ତ୍ତି ସଂପର୍କରେ କ୍ଷୁଦ୍ର ପୁସ୍ତକଟିଏ ଲେଖି ଓଡ଼ିଶାର ପାଠକ–ପାଠିକାମାନଙ୍କୁ ମୁକ୍ତ ହସ୍ତରେ ଯୋଗାଇ ଦେବା ପାଇଁ ଦୀର୍ଘ ପାଞ୍ଚବର୍ଷ ପୂର୍ବରୁ ଯୋଜନା କରିଥିଲି । ସ୍ୱପ୍ନେଶ୍ୱର ଦାଶଙ୍କ ପ୍ରାଥମିକ ରଚନାବଳୀ ଗୁଡ଼ିକ ଆଉ ମିଳୁ ନଥିବାରୁ ମୁଁ ଏଠାରେ ସାମଗ୍ରିକ କୃତିର ମୂଲ୍ୟାୟନ କରିବାକୁ ଅସମର୍ଥ । ଯତ୍‌କିଞ୍ଚିତ୍ ପ୍ରୟାସ କରି ଏହି ସାମାନ୍ୟ ମନୋଗ୍ରାଫ୍‌ଟିଏ ଲେଖିବାକୁ ସାହସ କରିଛି । ଏହି ବହିରେ ସ୍ୱପ୍ନେଶ୍ୱରଙ୍କ କୃତି ଓ କୀର୍ତ୍ତି ସଂପର୍କରେ ପାଠକମାନେ ସମ୍ୟକ୍ ଧାରଣା କରିପାରିବେ । ମୋ' ଅପେକ୍ଷା କୌଣସି ଅଭିଜ୍ଞ ଗବେଷକଙ୍କ ଦ୍ୱାରା ଏହି ମହତ୍‌କାର୍ଯ୍ୟ ସଂପାଦିତ ହୋଇଥିଲେ ତାହା ଅଧିକ ହୃଦ୍ୟ ହୋଇପାରିଥାନ୍ତା ବୋଲି ମୋର ଆଶା ।

କବି ସ୍ୱପ୍ନେଶ୍ୱର ଦାଶଙ୍କ କେତେକ ପ୍ରାଥମିକ ରଚନାବଳୀ ଯୋଗାଇ ଦେବାରେ ସ୍ୱତଃପ୍ରବୃତ୍ତ ହୋଇ ଯେଉଁମାନେ ମତେ ସାହାଯ୍ୟ କରିଛନ୍ତି, ସେମାନେ ହେଲେ କବି ଶ୍ରୀ ରାଜାରାମ ମେହେର (ଲାଉମୁଣ୍ଡା), ଶ୍ରୀ ପ୍ରସନ୍ନ କୁମାର ଦାଶ (ଅବସରପ୍ରାପ୍ତ ପ୍ରଧାନଶିକ୍ଷକ, ରାଣାପ୍ରତାପ ହାଇସ୍କୁଲ ବରଗଡ଼) ଶ୍ରୀ ହୃଦମଣି ପ୍ରଧାନ (ଅବସରପ୍ରାପ୍ତ ଇଂରାଜୀ ଅଧ୍ୟାପକ, ବରଗଡ଼ ପଞ୍ଚାୟତ କଲେଜ) କବିଙ୍କ ଦୁଇ ପ୍ରପୌତ୍ର ଶ୍ରୀ ମୋହନ ଦାଶ ଓ ଶ୍ରୀ ମହେନ୍ଦ୍ର କୁମାର ଦାଶ । ବର୍ତ୍ତମାନ ଓଡ଼ିଶାର ଦୁଇ ବିଶିଷ୍ଟ ଗବେଷକ–ଅଧାପକ ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶ ଓ ଅଧାପକ ଡକ୍ଟର ଗୌରାଙ୍ଗ ଚରଣ ଦାଶ ବିଭିନ୍ନ ସମୟରେ  କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ତଥା ସମକାଳୀନ ଓଡ଼ିଆ ସାହିତ୍ୟର ଇତିହାସ ସଂପର୍କରେ ମତେ ଆବଶ୍ୟକ ତଥ୍ୟ ଓ ସୂଚନାମାନ ପ୍ରଦାନ କରିଛନ୍ତି । ତେଣୁ

ତିନି ସାହିତ୍ୟିକ, ଦୁଇ ଗବେଷକ ବନ୍ଧୁ ଏବଂ କବିଙ୍କ ଦୁଇ ପ୍ରପୌତ୍ରଙ୍କୁ ସଭକ୍ତି ପ୍ରଣାମ ଜଣାଉଛି । ମୁଁ ଏଥିରେ ବ୍ୟବହାର କରିଥିବା କେତେକ ଆବଶ୍ୟକ ଉପାଦାନ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପାଠାଗାର, ଗଙ୍ଗାଧର ମେହେର କଲେଜ ପାଠାଗାର, ଲରମ୍ଭା କଲେଜ ପାଠାଗାର, ଆଞ୍ଚଳିକ ଅଭିଲେଖାଗାର, ସମ୍ବଲପୁର, ସମ୍ବଲପୁର ଜିଲ୍ଲା ପାଠାଗାରରୁ ସଂଗୃହୀତ । ସେହିପରି 'ଓଡ଼ିଶା ରାଜ୍ୟ ଅଭିଲେଖାଗାର' ରେ ଥିବା 'ଉତ୍କଳ ଦୀପିକା' ଓ 'ସମ୍ବଲପୁର ହିତୈଷିଣୀ'ର କେତେକ ସଂଖ୍ୟା ବ୍ୟବହାର କରିବାର ସୁଯୋଗ ପାଇଥିଲି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପାଠାଗାରରୁ ଦେଖିବାକୁ ପାଇଥିଲି ''ବୈଦ୍ୟ କଳ୍ପଦ୍ରୁମ''ର ନୂତନ ସଂସ୍କରଣ (୧୯୫୩) ଏବଂ ''ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ''ର ପ୍ରଥମ ସଂସ୍କରଣ (୧୯୬୩) । ସୋନପୁର ଦରବାର ଆନୁକୂଲ୍ୟରେ ପ୍ରକାଶିତ କବିଙ୍କ ''ସମ୍ବଳ ମନସା'', ''କୃତଜ୍ଞତା ପୁଷ୍ପାଞ୍ଜଳି'' ଏବଂ ''ଅନ୍ତ୍ୟେଷ୍ଟିଯାଗ'' ପ୍ରଭୃତି ତିନିଖଣ୍ଡ ପୁସ୍ତକ ଦେଖିବାର ଓ ବ୍ୟବହାର କରିବାର ଅପୂର୍ବ ସୁଯୋଗ ମିଳିଥିଲା ମୋର ଗବେଷକ ବନ୍ଧୁ ଶ୍ରୀ ସୁଦାମ ନାଏକ (ସୋନପୁର)ଙ୍କ ସୌଜନ୍ୟରୁ । କବି ସ୍ୱପ୍ନେଶ୍ୱର ଦାଶଙ୍କ ନିକଟକୁ ଆସିଥିବା କବିବର ରାଧାନାଥ, ଭକ୍ତକବି ମଧୁସୂଦନ  ରାଓ, ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ପତ୍ରାବଳୀ, ସମକାଳୀନ ଅନ୍ୟାନ୍ୟ ସାହିତ୍ୟିକ, ବିଭିନ୍ନ ଅନୁଷ୍ଠାନରୁ ମିଳିଥିବା ପତ୍ରାବଳୀ ଓ କବିଙ୍କ ଅନ୍ୟାନ୍ୟ କାଗଜପତ୍ର ଦେଖିବାର ସୁଯୋଗ ଦେଇଛନ୍ତି କବିଙ୍କ ପ୍ରପୌତ୍ର ବରଗଡ଼ ନିବାସୀ ଶ୍ରୀ ମହେନ୍ଦ୍ରକୁମାର ଦାଶ । ତାଙ୍କୁ ସାଦର ନମସ୍କାର ଜଣାଉଛି । କଟକ 'ଉତ୍କଳ ସାହିତ୍ୟ ସମାଜ'ର 'ଉତ୍କଳ ଗୌରବ ମଧୁସୂଦନ ପାଠାଗାର'ରେ ଥିବା 'କାମାୟନୀ'ର ପ୍ରଥମ ସଂସ୍କରଣ (୧୯୫୬) ଦେଖିବାର ସୁଯୋଗ ପାଇଥିଲି । ତେଣୁ ଏହାର କର୍ମକର୍ତ୍ତାଙ୍କ ନିକଟରେ ମୁଁ ଚିରକୃତଜ୍ଞ ।

ସୁସାହିତ୍ୟିକ ଶ୍ରୀଯୁକ୍ତ ରମେଶ ଦାସ (ଅବସରପ୍ରାପ୍ତ ଓଡ଼ିଆ ପ୍ରଫେସର, ବି.ଜେ.ବି. କଲେଜ ଭୁବନେଶ୍ୱର) ଏବଂ କବି ସ୍ୱପ୍ନେଶ୍ୱରଙ୍କ ଜଣେ ପୌତ୍ରୀ ଡାକ୍ତର ଉଷାରାଣୀ ଦାଶଙ୍କ ବାରମ୍ବାର ଅନୁରୋଧ ତଥା ଉତ୍ସାହଦାନ ଏକାନ୍ତ ଉଲ୍ଲେଖଯୋଗ୍ୟ । ଉଭୟଙ୍କୁ ଆନ୍ତରିକ ପ୍ରଣାମ ଜଣାଉଛି । ପୁସ୍ତକଟିର ସୁନ୍ଦର ପ୍ରଚ୍ଛଦପଟ ତଥା ଅଙ୍ଗସଜ୍ଜା ପାଇଁ ଦିବ୍ୟମୁଦ୍ରଣୀର ସତ୍ତ୍ୱାଧିକାରୀ ଶ୍ରୀ ବିଭୁ ପ୍ରସୂନ ଦାସଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ପୁସ୍ତକଟି ଓଡ଼ିଶାର ସୁଧୀମଣ୍ଡଳୀ ଦ୍ୱାରା ଆଦୃତ ହେଲେ ନିଜକୁ ଧନ୍ୟ ମଣିବି ।

ଇତି

ଶ୍ରୀ ଦୀପ୍ତିରଞ୍ଜନ ଶେଠ

ବାବୁବନ୍ଧ,
ତା ୧୪.୧.୨୦୧୩ ଇସବୀ
ମକର ସଂକ୍ରାନ୍ତି, ସୋମବାର
(ବ୍ୟାସକବି ଫକୀରମୋହନ ଜୟନ୍ତୀ)

# କବିଙ୍କ ପରିବାର ସୌଜନ୍ୟରୁ

କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କ ଆତ୍ମଜୀବନୀ ତଥା ତାଙ୍କର ଜୀବନ ଓ ପ୍ରତିଭା ସମ୍ବନ୍ଧରେ ଆଲୋକପାତ କରିବା ପାଇଁ ତାଙ୍କର କନିଷ୍ଠପୁତ୍ର ଅନିରୁଦ୍ଧ ଦାଶ, ଆଇ.ଏ.ଏସ୍ ସର୍ବପ୍ରଥମେ ଶୁଭପ୍ରୟାସ କରିଥିଲେ ମଧ୍ୟ ତାଙ୍କର ଆକସ୍ମିକ ବିୟୋଗ ଯୋଗୁଁ ତାହା ସମ୍ଭବ ହୋଇପାରି ନଥିଲା । କବି ସ୍ୱପ୍ନେଶ୍ୱରଙ୍କ କେତେକ ରଚନାବଳୀକୁ ସଂଗ୍ରହ କରି ଗୋଟିଏ ମନୋଗ୍ରାଫ୍ ରଚନା କରିଛନ୍ତି ସାହିତ୍ୟିକ ଓ ଗବେଷକ ଶ୍ରୀ ଦୀପ୍ତିରଞ୍ଜନ ଶେଠ । ଶ୍ରୀଯୁକ୍ତ ଶେଠ ମହାଶୟଙ୍କ ଆନ୍ତରିକ ଉଦ୍ୟମ ବଳରେ କବିଭୂଷଣ ସ୍ୱପ୍ନେଶ୍ୱରଙ୍କ ଜୀବନୀ ଓ ସାହିତ୍ୟର କିୟଦଂଶ ଲୋକଲୋଚନକୁ ଆସିଥିବାରୁ ଆମେ କବିଙ୍କ ପରିବାର ତରଫରୁ ତାଙ୍କୁ ଗଭୀର କୃତଜ୍ଞତା ଜ୍ଞାପନ କରିବା ସଂଗେ ସଂଗେ ସ୍ୱର୍ଗତ ପିତାମହଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁଁ । ଭୁବନେଶ୍ୱରର ଦିବ୍ୟ ପ୍ରକାଶନୀ ପ୍ରକାଶନର ଦାୟିତ୍ୱ ବହନ କରିଥିବାରୁ ଏବଂ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ପୁସ୍ତକଟିକୁ ସର୍ବାଙ୍ଗ ସୁନ୍ଦର କରିଥିବାରୁ ଆମେ ଅନୁଷ୍ଠାନର ତତ୍ତ୍ୱାବଧାରକ ଶ୍ରୀ ବିଭୁ ପ୍ରସୂନ ଦାସ ତଥା ତାଙ୍କର ସହଯୋଗୀମାନଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛୁ ।

ବିନୀତ
ଚିତ୍ତରଞ୍ଜନ ଦାଶ
ଭୁବନେଶ୍ୱର

ତା ୨୬-୧-୨୦୧୩

# କବି ସ୍ୱପ୍ନେଶ୍ୱରଙ୍କ ବଂଶାବଳୀ ପରିଚୟ

ଧନେଶ୍ୱର ଦାଶ (ବିଶ୍ୱାମିତ୍ର ପ୍ରବର, କାତ୍ୟାୟନ ଗୋତ୍ର)

- ଲକ୍ଷ୍ମୀନ୍ଦ୍ର ଦାଶ
  - ହୃଷୀକେଶ ଦାଶ
    - ଗଦାଧର
    - ଶ୍ରୀବତ୍ସ
    - ବିଦ୍ୟାଧର
    - ବିମ୍ବାଧର
    - ସୋମନାଥ
    - ଜନାର୍ଦ୍ଦନ
    - ସଂକର୍ଷଣ
      - କାରିକେଶ୍ୱର
      - ବୃନ୍ଦାବନ
        - ସ୍ୱପ୍ନେଶ୍ୱର(କବିଭୂଷଣ)
          - ବିଜୟକେତନ
            - ଗୌରଚନ୍ଦ୍ର
            - ସୁଶୀଳା
            - ସୁଲୋଚନା
            - ସୁବ୍ରୁ
          - ଶ୍ରୀନିବାସ
            - କୃଷ୍ଣ
            - ଅମୂଲ୍ୟ
          - ସତ୍ୟବତୀ
          - ଅନିରୁଦ୍ଧ
            - ନିତ୍ୟାନନ୍ଦ
            - ମନୋରଞ୍ଜନ
            - ଚିତ୍ତରଞ୍ଜନ
            - ଜ୍ଞାନରଞ୍ଜନ
            - ଜ୍ୟୋତିରଞ୍ଜନ
            - ବାଣୀରଞ୍ଜନ
            - ଗୋପୀରଞ୍ଜନ
            - ବ୍ରଜରଞ୍ଜନ
            - ସନ୍ଧ୍ୟାରାଣୀ
            - ଉଷାରାଣୀ
            - ବ୍ୟୋମରଞ୍ଜନ
            - ବିଶ୍ୱରଞ୍ଜନ
            - ସୁଧାରାଣୀ
          - ଉମାଦେବତା
        - ସୂର୍ଯ୍ୟମଣି
          - ଐତିହାସିକ ଶିବପ୍ରସାଦ ଦାଶ (''ସମ୍ବଲପୁର ଇତିହାସ'' ର ଲେଖକ)
            - ଅକ୍ଷୟ
            - ଆଶୁତୋଷ
        - ଦାଶରଥି



ପଣ୍ଡିତ ଶ୍ରୀ ସ୍ୱପ୍ନେଶ୍ୱର ଦାଶ କବିଭୂଷଣ
ଜନ୍ମ : ତା ୨୬. ୦୧. ୧୮୭୬, ସୋମବାର
ମୃତ୍ୟୁ : ୦୩.୦୬. ୧୯୬୨



କବିପତ୍ନୀ ନାରୀକବି ପଦ୍ମାବତୀ ଦେବୀ

ଜନ୍ମ : ୧୦. ୧୦. ୧୮୭୯

ମୃତ୍ୟୁ : ୨୫. ୦୩. ୧୯୫୫

# ସୂଚୀପତ୍ର


୧. ପ୍ରଥମ ଅଧ୍ୟାୟ ୧୧

ଅନାଲୋଚିତ ପ୍ରତିଭା–କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ।

୨. ଦ୍ୱିତୀୟ ଅଧ୍ୟାୟ ୬୨

କବି ସ୍ୱପ୍ନେଶ୍ୱର ଦାଶ ।

୩. ତୃତୀୟ ଅଧ୍ୟାୟ ୮୫

ଐତିହାସିକ ସ୍ୱପ୍ନେଶ୍ୱର ।

୪. ଚତୁର୍ଥ ଅଧ୍ୟାୟ ୯୨

ସାରସ୍ୱତ ସ୍ରଷ୍ଟା ସ୍ୱପ୍ନେଶ୍ୱରଙ୍କ ସୃଷ୍ଟି ପ୍ରତ୍ୟୟ ।

୫. ପରିଶିଷ୍ଟ –୧ ୧୧୩

୬. ପରିଶିଷ୍ଟ – ୨ ୧୧୬

୭. ପ୍ରାଥମିକ ଉପାଦାନ ପଞ୍ଜିକା ୧୧୮

୮. ସହାୟକ ଗ୍ରନ୍ଥସୂଚୀ ୧୨୦

ପ୍ରଥମ ଅଧ୍ୟାୟ

# ଅନାଲୋଚିତ ପ୍ରତିଭା–କବିଭୂଷଣ ସ୍ୱପ୍ନେଶ୍ୱର ଦାଶ

## ପରିଚୟ :

ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ (୧୮୭୬) ଜନ୍ମିତ କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କ କବି ପ୍ରତିଭା ପ୍ରକୃତରେ ବିକଶିତ ହୋଇଛି ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ । ପଶ୍ଚିମ ଓଡ଼ିଶାର ସାମାଜିକ ଜୀବନ, ଜଳବାୟୁ, ସୁଖଦୁଃଖ, ଭାଷା ଓ ସାହିତ୍ୟର ବିକାଶ ତଥା ପୂର୍ବସୂରୀମାନଙ୍କ କୃତିଗୁଡ଼ିକ ସଂପର୍କରେ ସବିଶେଷ ଅବଗତ ହେବାପାଇଁ ସେ ପ୍ରଥମେ ଗଭୀର ଅଧ୍ୟୟନ, ଚିନ୍ତନ ଓ ମନନ କାର୍ଯ୍ୟରେ ନିଜକୁ ସଂପୂର୍ଣ୍ଣ ରୂପେ ନିୟୋଜିତ କରି ଦେଇଥିଲେ । କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଥିଲେ ଜଣେ ସମାଜ ସଚେତନ ସାହିତ୍ୟିକ । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ସେ ନିଜର ମୌଳିକତାର ପରିଚୟ ଦେଇଯାଇଛନ୍ତି । ସାମାଜିକ ଜୀବନର ବିଭିନ୍ନ ବ୍ୟସ୍ତତା ମଧ୍ୟରେ ସେ ବୁଡ଼ି ରହିଥିଲେ ବି' ସେ ଥିଲେ ଗଭୀର କଳ୍ପନାବିଳାସୀ, ଚତୁର, ରସିକ, ଭୋଳା, ଖିଆଲୀ ତଥା ଜିଦ୍‌ଖୋର୍ । ଗଡ଼ଜାତ ଭ୍ରମଣ କରିବା ତାଙ୍କର ଏକପ୍ରକାର ସଉକ ଥିବାରୁ ସେ ବିଭିନ୍ନ ଗଡ଼ଜାତ ଗୁଡ଼ିକ ବୁଲୁଥିଲେ । ସେ ନିଜେ ଅନେକ ଖବର ଜାଣିପାରୁଥିବାରୁ ତଥା ସ୍ଥାନୀୟ ଅଭାବ, ଅସୁବିଧା କଥା, ବିଭିନ୍ନ ସମସ୍ୟା ଉପରେ ତାଙ୍କର ସଂକ୍ଷିପ୍ତ ଅଭିମତ ସବୁ ଲେଖି ତତ୍‌କାଳୀନ "ସମ୍ବଲପୁର ହିତୈଷିଣୀ" ପତ୍ରିକାକୁ ପଠାଉଥିଲେ । ସେଗୁଡ଼ିକ ମଧ୍ୟରୁ କେତେକାଂଶ ପ୍ରକାଶିତ ହୋଇଛି । ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ପଶ୍ଚିମ ଓଡ଼ିଶାର ଜଣେ ଜାଗ୍ରତ ଓ ବିନିଦ୍ରପ୍ରହରୀ ଭାବେ ସେ କାମ କରିଛନ୍ତି ।

କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଓଡ଼ିଆ ସାହିତ୍ୟରେ ଜଣେ ବହୁମୁଖୀ ସାରସ୍ୱତ ବ୍ୟକ୍ତିତ୍ୱ । ସେ ବହୁ ପରିଚିତ ନ ହେଲେ ବି' ଅପରିଚିତ ନୁହନ୍ତି । କାବ୍ୟଚର୍ଚ୍ଚା ସହିତ ଗ୍ରନ୍ଥ ରଚନା, ଐତିହାସିକ ଆଲୋଚନା କରିବା ତାଙ୍କର ପ୍ରାତ୍ୟହିକ କର୍ମ ଥିଲା । ସେ ନିଜେ ଜଣେ କବି, କବିରାଜ ଓ ଐତିହାସିକ । ସେ ପ୍ରାଚୀନ ଓଡ଼ିଆ କାବ୍ୟଗ୍ରନ୍ଥ ଓ ଇତିହାସ ବିଷୟଗୁଡ଼ିକୁ ବହୁ ଭାବରେ ଆୟତ୍ତ କରିପାରିଥିଲେ । ତେଣୁ ତାଙ୍କର ସମଗ୍ର ଜୀବନ ସାହିତ୍ୟ ସାଧନା ପାଇଁ ଉତ୍ସର୍ଗୀକୃତ ଥିଲା । ସ୍ୱପ୍ନେଶ୍ୱର ଦାଶଙ୍କ ପ୍ରପିତାମହ ହୃଷୀକେଶ ଦାଶଙ୍କ ଦେହାନ୍ତପରେ ତାଙ୍କର ପତ୍ନୀ ଶ୍ରୀମତୀ ରାଧିକା ଦେବୀ ଚିତାରେ

ସହଗାମିନୀ ହୋଇଥିଲେ । ସେ ସମ୍ବଲପୁରର ଶେଷସତୀ ଥିଲେ ଏବଂ ସେଥିପାଇଁ ଏହି ବଂଶକୁ ବହୁତ ସମ୍ମାନ ମିଳିଥିଲା ।

**ଜନ୍ମ ଓ ଜୀବନୀ :**

ସମ୍ବଲପୁର ଜିଲ୍ଲାର ବରଗଡ଼ ସନ୍ନିକଟ ରୋହିଣିଆଁ ନାମକ ଏକ ଅଖ୍ୟାତ୍ କ୍ଷୁଦ୍ର ପଲ୍ଲୀରେ ତା ୨୬.୧.୧୮୭୬ ମସିହାରେ ସ୍ୱପ୍ନେଶ୍ୱର ଦାଶ ଜନ୍ମଲାଭ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ଶ୍ରୀ କାର୍ତ୍ତିକେଶ୍ୱର ଦାଶ ଓ ମାତାଙ୍କ ନାମ ଥିଲା ଶ୍ରୀମତୀ ଦୂତୀ ଦେବୀ । ଦୂତୀଦେବୀଙ୍କ ବିବାହର ଅନେକ ବର୍ଷ ପର୍ଯ୍ୟନ୍ତ କୌଣସି ସନ୍ତାନ ନହେବାରୁ ସେ ସ୍ୱର୍ଣ୍ଣା ଗ୍ରାମର "ଶ୍ରୀ ଶ୍ରୀ ବିମଳେଶ୍ୱର ମହାଦେବ"ଙ୍କଠାରେ ଗୁଆ ବସାଇଥିଲେ । ମହାଦେବଙ୍କ ଆଶୀର୍ବାଦରୁ ତଥା ଶ୍ରୀ ଶ୍ରୀ ସ୍ୱପ୍ନେଶ୍ୱର ବାବାଙ୍କ କୃପାରୁ ପ୍ରଥମ ପୁତ୍ର ସନ୍ତାନ ଭାବରେ ଜନ୍ମଲାଭ କରିଥିବାରୁ ଜନ୍ମଗ୍ରହଣ କରିଥିବାର ବିଶ୍ୱାସ ହେତୁ ସେହି ନବୀନ ପୁତ୍ର ସନ୍ତାନଟିର ନାମ 'ସ୍ୱପ୍ନେଶ୍ୱର' ରଖା ଯାଇଥିଲା । ପ୍ରକୃତରେ ତାଙ୍କର ନକ୍ଷତ୍ର ସଂଘଟିତ ନାମ ଥିଲା "ଚୈତନ୍ୟ" । ସ୍ୱପ୍ନେଶ୍ୱରଙ୍କ ତଳକୁ ତାଙ୍କର ଆଉ ଦୁଇଜଣ ସାନଭାଇ ଥିଲେ । ସେମାନେ ହେଲେ : ସୂର୍ଯ୍ୟମଣି ଦାଶ ଓ ଦାଶରଥୀ ଦାଶ । ସୂର୍ଯ୍ୟମଣି ଦାଶ ହେଉଛନ୍ତି ବିଶିଷ୍ଟ ଐତିହାସିକ, ଗବେଷକ ଓ "ସମ୍ବଲପୁର ଇତିହାସ" ପୁସ୍ତକର ଲେଖକ ଶିବପ୍ରସାଦ ଦାଶଙ୍କ ପିତା । କବି ସ୍ୱପ୍ନେଶ୍ୱରଙ୍କ କେହି ଭଉଣୀ ଥିଲେ କି ନା ତାହା ଜଣାପଡ଼େ ନାହିଁ ।

**ଶିକ୍ଷା :**

ସ୍ୱପ୍ନେଶ୍ୱର ଦାଶଙ୍କ ବାଲ୍ୟଜୀବନ ଓ ପ୍ରାଥମିକ ଶିକ୍ଷା ସଂପର୍କରେ ଅଧ୍ୟାପକ ପ୍ରଦୀପ କୁମାର ହୋତା ଲେଖିଛନ୍ତି :

*"...ପଞ୍ଚମବର୍ଷରେ ସ୍ୱପ୍ନେଶ୍ୱରଙ୍କ ଖଡ଼ୀଛୁଆଁ ହୋଇଥିଲା । କାଠ ପିଣ୍ଡାରେ ଲାଲ୍‌ମାଟି ଗୁଣ୍ଡରେ ଧାତୁକୀ କାଠିରେ ବର୍ଣ୍ଣଶିକ୍ଷା ଆରମ୍ଭ କରିଥିଲେ । ପଢ଼ିବା ପାଇଁ ସେତେବେଳେ ରୋହିଣିଆଁରେ କୌଣସି ଚାଟଶାଳୀ ନଥିଲା । କଟକ ଜିଲ୍ଲାରୁ ଜଣେ ଅବଧାନ ଆସି ଗ୍ରାମର ବାଳକମାନଙ୍କୁ ଶୀତ ଓ ଗ୍ରୀଷ୍ମଋତୁରେ ଦେଶୀପାଠ ପଢ଼ାଇ ବର୍ଷାପୂର୍ବରୁ ନିଜ ଘରକୁ ଚାଲିଯାଉଥିଲେ । କବି, ତାଙ୍କ ପିତାଙ୍କଠାରୁ ସ୍କୁଲପାଠ ପ୍ରଥମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ । ଆଠବର୍ଷ ବୟସରେ ବରଗଡ଼ରେ ଥିବା ତାଙ୍କ ମାମୁଁଘରେ ରହି ସ୍କୁଲପାଠ ଆରମ୍ଭ କଲେ । ପ୍ରାଇମେରୀ କ୍ଲାସ୍‌ମାନଙ୍କରେ ସ୍ୱପ୍ନେଶ୍ୱର ଉଲ୍ଲେଖଯୋଗ୍ୟ ଉନ୍ନତି ଦେଖାଇପାରି*

*ନଥିଲେ । ସେଥିର ମୂଳକାରଣ–ମାମୁଁଘରେ ରହି ପାଠ ପଢ଼ିବା । ଖାଦ୍ୟପେୟର ବିଶେଷ ବ୍ୟବସ୍ଥା ଥିଲେ ସୁଦ୍ଧା ତାଙ୍କର ପାଠର କୌଣସି ସୁବ୍ୟବସ୍ଥା ନଥିଲା । ଅଧିକାଂଶ ସମୟ ଖେଳ, କୌତୁକ, ହାସ ପରିହାସରେ କଟୁଥିଲା ।*

*ମାମୁଁଘରେ ପାଠପଢ଼ାରେ ବ୍ୟାଘାତ ସୃଷ୍ଟି ହେବାରୁ ସ୍ୱପ୍ନେଶ୍ୱର ନିଜ ଘରକୁ ଚାଲିଗଲେ । ସେତେବେଳେ ସମ୍ବଲପୁର ମଧ୍ୟପ୍ରଦେଶରେ ଥାଏ । ପ୍ରତିବର୍ଷ ଅକ୍ଟୋବର ଶେଷ ସପ୍ତାହରେ ମଧ୍ୟପ୍ରଦେଶ ଟିଚର୍ସ ସାର୍ଟିଫିକେଟ୍ ପରୀକ୍ଷା ଗୃହୀତ ହେଉଥିଲା । ସଂଗେ ସଂଗେ ପଞ୍ଚମ ଶ୍ରେଣୀରୁ ଭିଲେଜ ଶ୍ରେଣୀକୁ ଛାତ୍ର ନେବା ପାଇଁ ନିର୍ବାଚନୀ ପରୀକ୍ଷା ହେଉଥିଲା । ସ୍ୱପ୍ନେଶ୍ୱର ପଢ଼ାଛାଡ଼ି ଘରକୁ ଚାଲିଯାଇଥିଲେ । ତେଣୁ ପରୀକ୍ଷା ଦେବା ପାଇଁ ଉଚିତ ମନେକରୁ ନଥିଲେ । ତଦାନୀନ୍ତନ ହେଡ୍‌ମାଷ୍ଟର୍ କଟକ ମୂଳବସନ୍ତ ନିବାସୀ ଶ୍ରୀ ମାଧବ ଚନ୍ଦ୍ର କରଙ୍କ ଉତ୍ସାହ ଓ ତାଙ୍କ ନିଜ ପ୍ରଚେଷ୍ଟାରେ ନିର୍ବାଚନୀ ପରୀକ୍ଷାରେ ପ୍ରଥମ ନମ୍ବରରେ ପାଶ୍ କଲେ । କବିଙ୍କର ବୟସ ୧୫ ବର୍ଷ ହୋଇଥିଲେ ସୁଦ୍ଧା ହେଡ୍‌ମାଷ୍ଟର୍ ଦୁଇବର୍ଷ ବୟସ ବଢ଼ାଇ ଦେଇ ତାଙ୍କୁ ପିପୁ୍ୟଲ୍‌ଟିଚର୍ସ ବିଭାଗକୁ ଉଠାଇ ଦେଇଥିଲେ ।''*

(ଉଦ୍ଧୃତ–ବରପୁତ୍ର–୧୯୯୨;ଗାନ୍ଧୀସ୍ମୃତି ପାଠାଗାର, ବରଗଡ଼)

**ଚାକିରୀ :**

ସମ୍ଭବତଃ, ୧୮୯୩ ମସିହାରେ ଟିଚର୍ସ ସାର୍ଟିଫିକେଟ୍ ପରୀକ୍ଷା ଦେଇଥିଲେ ଏବଂ ପରୀକ୍ଷା ଫଳ ପ୍ରକାଶିତ ହେବା ପୂର୍ବରୁ ବରଗଡ଼–ଭଟଲି ଥାନା ଅନ୍ତର୍ଗତ ''ସୁଲୁସୁଲିଆ'' ସ୍କୁଲରେ ଶିକ୍ଷକ ଜୀବନ ଆରମ୍ଭ କରିଥିଲେ । ଏହି ସମୟରେ ତାଙ୍କର କବି ପ୍ରତିଭାର ଆଦ୍ୟ ଉନ୍ମେଷ ହୋଇଥିଲା ।

**କବି ଉପାଧି :**

''ସୁଲୁସୁଲିଆ'' ସ୍କୁଲରେ କିଛିକାଳ ଶିକ୍ଷାଦାନ କଲାପରେ ସେ 'କୁବେଡେଗା' ସ୍କୁଲରେ ଯୋଗଦାନ କରିଥିଲେ । କୁବେଡେଗାରେ ଥିବା ସମୟରେ 'ସାରଳା ମହାଭାରତ'କୁ ନବାକ୍ଷରୀ ବୃତ୍ତରେ ରଚନା କରି ବିଶେଷ ଜନପ୍ରିୟ ହୋଇଥିଲେ ଏବଂ ତାହା ତାଳପତ୍ର ପୋଥିରେ ରଚିତ ହୋଇଥିଲା । ସେତେବେଳେ ଭେଡ଼େନ୍ ଜମିଦାର ଶ୍ରୀ ବଳରାମ ସିଂହଙ୍କଠାରୁ ଯୁବକ ସ୍ୱପ୍ନେଶ୍ୱର ନିଜର ଆଦ୍ୟ ପ୍ରତିଭାର ପୁରସ୍କାର

ସ୍ୱରୂପ ପାଞ୍ଚଟଙ୍କା ଓ କବି ଉପାଧି ପାଇଥିଲେ । ଏହା ସମ୍ଭବତଃ ୧୮୯୬/୯୭ ମସିହାର କଥା ।

**ରମ୍ଭେଲା ଚିତ୍ରାବଳୀ :**

୧୮୯୮ ମସିହା, ଜୁଲାଇ ମାସରେ କବି ସ୍ୱପ୍ନେଶ୍ୱର ଦାଶ କୁବେଡେଗାରୁ ରେମଣ୍ଡା ସ୍କୁଲକୁ ତୃତୀୟ ଶିକ୍ଷକ ଭାବରେ ନିଯୁକ୍ତ ହୋଇଥିଲେ । (ପରୱାନ ନଂ ୭୦୭ ତା: ୧୯.୭.୧୮୯୮, ବେତନ ମାତ୍ର ୭ ଟଙ୍କା) । ରେମଣ୍ଡାରେ ଥିବା ସମୟରେ କବି ସ୍ୱପ୍ନେଶ୍ୱର "ମହାଦେବ ଜଣାଣ" ଓ "ଲିଙ୍ଗ ମାହାତ୍ମ୍ୟ" ନାମକ ଦୁଇଟି କ୍ଷୁଦ୍ର ପୁସ୍ତକ ରଚନା କରିଥିଲେ । ଉଭୟ ରଚନାର ପାଣ୍ଡୁଲିପି ଦେଖିବା ପାଇଁ ସେହିବର୍ଷ ଫେମିନ୍ ଇନ୍ସପେକ୍ଟର ଶ୍ରୀକୃଷ୍ଣଚନ୍ଦ୍ର ପଟ୍ଟନାୟକ କବିଙ୍କଠାରୁ ମାଗିନେଇ ନିଜ ନାମରେ ଭଣତି କରିଥିଲେ । ୧୯୦୧ ମସିହାରେ କବି ରେମଣ୍ଡାରୁ ରମ୍ଭେଲା ସ୍କୁଲକୁ ପରିବର୍ତ୍ତିତ ହୋଇଥିଲେ । ଏଠାରେ କବି ଗଙ୍ଗାଧରଙ୍କ ପ୍ରତିଭାପୂଜକ ପଣ୍ଡିତ ରାଘବମିଶ୍ର, କବି ମୌଲାନା ମୁସ୍ତକିମ୍ ଖାଁ (ପ୍ରତିଷ୍ଠିତ କବି କୁମାର ହସନଙ୍କ ପିତା) ପ୍ରଭୃତି ରମ୍ଭେଲା ସ୍କୁଲରେ ତାଙ୍କର ଛାତ୍ର ଥିଲେ । ଶିକ୍ଷକ ସ୍ୱପ୍ନେଶ୍ୱର ଦାଶଙ୍କ ସାହିତ୍ୟ ଶିକ୍ଷା ଓ ସାଧନାରେ ଉଭୟ ଛାତ୍ର ପ୍ରଭାବିତ ହୋଇ ପରବର୍ତ୍ତୀ କାଳରେ ଉନ୍ନତ ତଥା ମୌଳିକ ସାହିତ୍ୟ ସୃଷ୍ଟିକରି ନିଜ ନିଜର ପ୍ରଜ୍ଞା ଓ ପ୍ରତିଭାର ପରିଚୟ ଦେଇଛନ୍ତି । ସ୍ୱପ୍ନେଶ୍ୱର ଦାଶ ରୋହଣିଆଁ ଗ୍ରାମରେ ଜନ୍ମଲାଭ କରିଥିଲେ ମଧ୍ୟ 'ରମ୍ଭେଲା' ଗ୍ରାମରେ ହିଁ ତାଙ୍କର ସାହିତ୍ୟିକ ପ୍ରତିଭାର ପ୍ରାଥମିକ ବିକାଶ ହୋଇଥିଲା । କବି ଏକଥା ତାଙ୍କ ସଂଗୃହୀତ "ପ୍ରବଚନ ତରଙ୍ଗ" ପୁସ୍ତକର ମୁଖବନ୍ଧ ପୃଷ୍ଠାରେ (ମୁଖବନ୍ଧର ତାରିଖ ୧.୪.୧୯୫୦ ମସିହା) ଉଲ୍ଲେଖ କରିଛନ୍ତି । 'ରମ୍ଭେଲା' ରେ ଅବସ୍ଥାନ କରୁଥିବା ସମୟରେ 'ରମ୍ଭେଲା' ଗ୍ରାମର ଭୌଗୋଳିକ ଓ ଅନେକ ଐତିହାସିକ ତଥ୍ୟକୁ ନେଇ 'ରମ୍ଭେଲା ଚିତ୍ରାବଳୀ' ନାମରେ ଖଣ୍ଡିଏ ଉପାଦେୟ କାବ୍ୟ ରଚନା କରିଥିଲେ । ସଂପ୍ରତି ତାହା ଦୁର୍ଲ୍ଲଭ । ତାଙ୍କର ଅପ୍ରକାଶିତ ଜୀବନୀ ଖାତାରେ ଏହି ପାଣ୍ଡୁଲିପି ପୁସ୍ତକର ପଦଟିଏ ମାତ୍ର ଦେଖିବାକୁ ମିଳେ । କବି ଲେଖିଛନ୍ତି :

"ପ୍ରକୃତି ଦେବୀଙ୍କ ସୌନ୍ଦର୍ଯ୍ୟ–ପେଟିକା
ଘେନି ମଉଳା–ଭଣଞ୍ଜା,
ଯାର ପୂର୍ବଦିଗେ ଅଛି ବିରାଜିତ
ହୋଇ ଜନମନ ରଞ୍ଜା ।"

'ରମ୍ଭେଲା'ର ପୂର୍ବଦିଗରେ ଇବ୍ ନଦୀର କିଛି ଦୂରରେ 'ମଉଳା–ଭଣଞ୍ଜା'ନାମରେ ପରସ୍ପର ସଂଲଗ୍ନ ଦୁଇଟି ପାହାଡ଼ ଅବସ୍ଥିତ । 'ରମ୍ଭେଲା' ଗ୍ରାମର

ଐତିହାସିକତା ସଂପର୍କରେ ପରିଚୟ ଦେବାକୁ ଯାଇ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପ୍ରଫେସର ଡକ୍ଟର ପ୍ରଫୁଲ୍ଲ କୁମାର ପତି ତାଙ୍କର ଆତ୍ମଚରିତ ''ନିଜକଥା'' ରେ ଉଲ୍ଲେଖ କରି କହିଛନ୍ତି :

> *''...ଲୋକେ ବିଶ୍ୱାସ କରନ୍ତି ଯେ ଶ୍ରୀରାମଚନ୍ଦ୍ର ବନବାସ ସମୟରେ ରମ୍ଭେଲା ଗ୍ରାମ ଦେଇ ଯାତ୍ରା କରିଥିଲେ । ତେଣୁ ସ୍ଥାନଟିର ନାମ ଥିଲା ''ରାମପଲ୍ଲୀ'' । କାଳକ୍ରମେ ଅପଭ୍ରଂଶରେ ''ରମ୍ଭେଲା'' ହୋଇଛି । ହୀରାକୁଦ ବନ୍ଧରେ ଜଳମଗ୍ନ ହେବା ଆଗରୁ ରମ୍ଭେଲା ତତ୍କାଳୀନ ବିହାର-ଓଡ଼ିଶା ପ୍ରଦେଶର ସବୁଠାରୁ ବଡ଼ ଗାଁ ଥିଲା । ଇବ୍‌ନଦୀ ତଟରେ ଥିବା 'ରମ୍ଭେଲା' ଏକ ଅଗ୍ରଣୀ ଓ ସମୃଦ୍ଧ ଗ୍ରାମ ଥିଲା । ଚାଷବାସ ସହିତ ଶିକ୍ଷାଦୀକ୍ଷାରେ ମଧ୍ୟ ଉନ୍ନତି କରିଥିଲା । ସେହି ସମୟରେ ଏଠାରେ ବାଳିକା ବିଦ୍ୟାଳୟ, ମିଡ଼ିଲ୍ ଭର୍ଣ୍ଣାକୁଲାର ବିଦ୍ୟାଳୟ, ପାଠାଗାର, ଡାକ୍ତରଖାନା ଓ ଥାନା ପ୍ରଭୃତି ସହରୀ ତଥା ସମ୍ଭ୍ରାନ୍ତ ଠାଟବାଟ ରହିଥିଲା । ଲୋକେ ମଧ୍ୟ ଅଗ୍ରଗତି କରିଥିଲେ । 'ରମ୍ଭେଲା'ର ଗୌନ୍ତିଆ ଲୋକନାଥ ପଣ୍ଡା (ପ୍ରଖ୍ୟାତ ସାମ୍ୟବାଦୀ ନେତା ସ୍ୱର୍ଗତ ପ୍ରସନ୍ନ କୁମାର ପଣ୍ଡାଙ୍କ ପୂର୍ବଜ) ସ୍ୱାଧୀନତା ସଂଗ୍ରାମ ସମୟରେ ଜାତୀୟବୀର ସୁରେନ୍ଦ୍ର ସାଏଙ୍କୁ ସାହାଯ୍ୟ କରି ବନ୍ଦୀ ଭାବରେ ଅସୁରଗଡ଼ ଦୁର୍ଗରେ ପ୍ରାଣତ୍ୟାଗ କରିଥିଲେ ।''*

(ନିଜକଥା : ୨୦୦୭, ପୃ.୧୬)

୧୯୦୭ ମସିହା, ଅଗଷ୍ଟ ମାସ ୧୫ ତାରିଖ ଦିନ ଓଡ଼ିଶା ବିଭାଗୀୟ ସ୍କୁଲ ଇନ୍‌ସପେକ୍ଟର ରାୟବାହାଦୂର ଭକ୍ତକବି ମଧୁସୂଦନ ରାଓ ରମ୍ଭେଲା ସ୍କୁଲ ପରିଦର୍ଶନ କରି ଆନନ୍ଦିତ ହୋଇଥିଲେ । ରମ୍ଭେଲା ସ୍କୁଲ ସହିତ ପଶ୍ଚିମ ଓଡ଼ିଶାର ଅନ୍ୟାନ୍ୟ ସ୍କୁଲ ଯଥା-ବରଗଡ଼ ମି.ଇ. ସ୍କୁଲ ମଧ୍ୟ ପ୍ରଦର୍ଶନ କରିଥିଲେ । ସେତେବେଳେ ବରଗଡ଼ ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ ପଣ୍ଡିତ ହରିହର ମିଶ୍ର (ସାହିତ୍ୟିକ ଶଶୀଭୂଷଣ ମିଶ୍ର ଶର୍ମାଙ୍କ ପିତା), ଯିଏକି ପ୍ରଖ୍ୟାତ 'ଗୋଚାରସିଦ୍ଧି' କାବ୍ୟ ରଚନା କରିଥିଲେ । ସେତେବେଳେ ଭାଷା ସଂପର୍କରେ କୌଣସି ଏକ ପ୍ରଶ୍ନ ନେଇ ପଣ୍ଡିତ ମିଶ୍ରଙ୍କ ସହିତ ମଧୁସୂଦନ ରାଓଙ୍କ ମତଭେଦ ହୋଇଥିଲା ।

**କବିଙ୍କ ବିବାହ :**

କବି ସ୍ୱପ୍ନେଶ୍ୱର ବରଗଡ଼ ସନ୍ନିକଟ ଗୁଡ଼େଶିରା ଗ୍ରାମର ଗୌନ୍ତିଆ ଶ୍ରୀ ଅର୍ଜୁନ ଦାଶଙ୍କ ଅଲିଅଳ ସୁଯୋଗ୍ୟା କନ୍ୟା ପଦ୍ମାବତୀ ଦେବୀଙ୍କୁ ୧୮୯୩ ମସିହାରେ ବିବାହ

କରିଥିଲେ । ସେତେବେଳେ ସ୍ୱପ୍ନେଶ୍ୱରଙ୍କ ବୟସ ୧୭ ବର୍ଷ ଓ କବିପତ୍ନୀଙ୍କ ବୟସ ଥିଲା ୧୪ ବର୍ଷ । ପରବର୍ତ୍ତୀ କାଳରେ କବି ପଦ୍ମାବତୀ ଦେବୀଙ୍କର ମଧୁର ସଖ୍ୟ ଲାଭ କରି ସାଂସରିକ ଜୀବନଯାପନରେ ଅପୂର୍ବ ସୁଯୋଗ ଲାଭ କରିଥିଲେ । ଅର୍ଜ୍ଜୁନ ଦାଶ ଥିଲେ କବିଙ୍କ ପିତା ଅର୍ଥାତ୍ କାର୍ତ୍ତିକେଶ୍ୱର ଦାଶଙ୍କର ଜଣେ ଘନିଷ୍ଠତମ ବନ୍ଧୁ । ସେହି ଦୃଷ୍ଟିରୁ ଉଭୟଙ୍କର ବିବାହ କାର୍ଯ୍ୟ ସର୍ବଶୁଭରେ ସଂପାଦିତ ହୋଇଥିଲା । ତେବେ କବି ସ୍ୱପ୍ନେଶ୍ୱର ଦାଶଙ୍କର ଶାଶୁ ଶ୍ୱଶୁରଙ୍କର ସଂପର୍କରେ ବିଶେଷ କିଛି ତଥ୍ୟ ଏହି ଆଲୋଚକ ପାଖରେ ନାହିଁ ।

## କବି ପ୍ରତିଭାର ଉନ୍ମେଷ :

୧୯୦୨ ମସିହା, ଜୁଲାଇ ମାସରେ କବି ସ୍ୱପ୍ନେଶ୍ୱରଙ୍କ ପ୍ରଚେଷ୍ଟାରେ 'ରମ୍ପେଲା'ରେ ଗୋଟିଏ ପୋଷ୍ଟ ଅଫିସ୍ ଖୋଲିଥିଲା । 'ରମ୍ପେଲା' ଅବସ୍ଥାନ କାଳରେ କବି 'ସୀତାପତି ଜଣାଣ', 'ଜାତୀୟ ସଂଗୀତ', 'ଦୟାସୁନ୍ଦରୀ', 'ଅଭିଷେକୋତ୍ସବ', 'ମୁକୁଟୋତ୍ସବ', 'ଅପୂର୍ବଯୋଗ', 'ରମ୍ପେଲା ଚିତ୍ରାବଳୀ' ଓ 'କୋଷାଙ୍କୁର' ପ୍ରଭୃତି କେତେକ ଛୋଟବଡ଼ ପୁସ୍ତକ ରଚନା କରିଥିଲେ ଓ ସେଗୁଡ଼ିକ ପ୍ରକାଶିତ ହୋଇଥିଲା । ଏହାବ୍ୟତୀତ 'ସମ୍ବଲପୁର ଇତିହାସ', 'ସମ୍ବଳ ମନସା' ଓ 'ପ୍ରବାଦ–ପ୍ରବଚନ–ସଂଗ୍ରହ'ର ପାଣ୍ଡୁଲିପିଗୁଡ଼ିକ 'ରମ୍ପେଲା' ଅବସ୍ଥାନ ସମୟରେ ତାଙ୍କ ଦ୍ୱାରା ସମ୍ପାଦିତ ହୋଇଥିଲା । ସ୍ୱପ୍ନେଶ୍ୱର ଦାଶ 'ରମ୍ପେଲା' ସ୍କୁଲରେ ଶିକ୍ଷକ ଥିବା ସମୟରେ ଭକ୍ତକବି ମଧୁସୂଦନ ରାଓ ସ୍କୁଲ ପରିଦର୍ଶନ କରି ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ । ୧୯୦୮ ମସିହା, ଜାନୁୟାରୀ ମାସ ୧୫ ତରିଖରେ ବରଗଡ଼ ଗୁରୁ ଟ୍ରେନିଂସ୍କୁଲ ଉଦ୍‌ଘାଟିତ ହୋଇଥିଲା ।

## ଅନୁବାଦ କାର୍ଯ୍ୟ :

୧୯୦୫ ମସିହାରେ ସ୍ୱପ୍ନେଶ୍ୱର ଦାଶ 'ରମ୍ପେଲା'ରେ ଅବସ୍ଥାନ କରୁଥିବା ସମୟରେ ପ୍ରସିଦ୍ଧ ହିନ୍ଦୀକବି ପୂଜ୍ୟ ଗୋସ୍ୱାମୀ ତୁଳସୀ ଦାସଙ୍କ ''ତୁଳସୀ ରାମାୟଣ''ର ଅନୁବାଦ କାର୍ଯ୍ୟ ଆରମ୍ଭ କରିଥିଲେ । ଦୀର୍ଘ ପାଞ୍ଚବର୍ଷ ପର୍ଯ୍ୟନ୍ତ ଗଭୀର ଅଧ୍ୟୟନ, ଚିନ୍ତନ ଓ ମନନ କାର୍ଯ୍ୟରେ ସଂପୂର୍ଣ୍ଣ ନିମଗ୍ନ ରହି ୧୯୧୦ ମସିହା ଚୈତ୍ର ପୂର୍ଣ୍ଣିମାଦିନ ରେମୁଣ୍ଡା ସ୍କୁଲ ଛାତ୍ରାବାସରେ ''ତୁଳସୀ ରାମାୟଣ''ର ଅନୁବାଦ କାର୍ଯ୍ୟ ସମାପ୍ତ କରିଥିଲେ । ସେ 'ତୁଳସୀ ରାମାୟଣ'ର ପ୍ରକାଶନ ସଂପର୍କରେ ଏକ ଦୀର୍ଘ ପ୍ରସ୍ତାବ ଲେଖି 'ସମ୍ବଲପୁର ହିତୈଷିଣୀ' ରେ ପ୍ରକାଶ କରିଥିଲେ । କବି ସ୍ୱପ୍ନେଶ୍ୱର ହିନ୍ଦୀ ଓ ସଂସ୍କୃତ ସାହିତ୍ୟର ଯେଉଁ କେତୋଟି ରଚନା ଓଡ଼ିଆରେ ଅନୁବାଦ କରିଥିଲେ ସେଗୁଡ଼ିକ ହେଲା :

୧. ତୁଳସୀ ରାମାୟଣ (ହିନ୍ଦୀ)–ଲେଖକ–ଗୋସ୍ୱାମୀ ତୁଳସୀ ଦାସ ।
୨. କାମାୟନୀ (ହିନ୍ଦୀ)– ଲେଖକ–ଜୟଶଙ୍କର ପ୍ରସାଦ ।
୩. ପଞ୍ଚବଟୀ (ହିନ୍ଦୀ) – ଲେଖକ–ମୈଥିଳୀ ଶରଣ ଗୁପ୍ତ ।

୪. ଆସୁଁ ବା ଅଶ୍ରୁ (ହିନ୍ଦୀ)– ଲେଖକ– ଜୟ ଶଙ୍କର ପ୍ରସାଦ ।
୫. ସାକେତ (ହିନ୍ଦୀ)– ଲେଖକ– ଜୟ ଶଙ୍କର ପ୍ରସାଦ ।
୬. ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ –(ସଂସ୍କୃତ)–ଲେଖକ–ଶଙ୍କରାଚାର୍ଯ୍ୟ ।

ଏଠାରେ ସୂଚନାଯୋଗ୍ୟ ଯେ, ତୁଳସୀ ରାମାୟଣ–୧୯୨୪ ମସିହାରେ, କାମାୟନୀ–୧୯୫୬ ମସିହାରେ, ଆସୁଁ ବା ଅଶ୍ରୁ–୧୯୫୯ ମସିହାରେ ଏବଂ ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ–୧୯୬୩ ମସିହାରେ ପ୍ରକାଶିତ । ତେବେ "ସାକେତ", ଏବଂ "ପଞ୍ଚବଟୀ" ପ୍ରକାଶିତ ହୋଇଛି କି ନା ବର୍ତ୍ତମାନ କହିବା ସମ୍ଭବ ନୁହେଁ । "ପଞ୍ଚବଟୀ" କାବ୍ୟର ଗୋଟିଏ ପାଣ୍ଡୁଲିପିରେ କବିଙ୍କ ହସ୍ତଲିପି ରହିଛି ଓ ସେଥିରେ ପ୍ରଥମ ସଂସ୍କରଣ ୧୯୫୭ ମସିହା ବୋଲି ଉଲ୍ଲେଖ ରହିଛି ।

## 'ତୁଳସୀ ରାମାୟଣ'ର ଉତ୍କଳାନୁବାଦ :

ଆଦି ମହାକାବ୍ୟ 'ରାମାୟଣ'ର ଅନୁବାଦ କାର୍ଯ୍ୟ ଭାରତୀୟ ଭାଷାରେ ସର୍ବପ୍ରଥମେ ଦକ୍ଷିଣ ଭାରତରେ ହୋଇଥିବା ସମ୍ଭବ । ହିନ୍ଦୀଭାଷାରେ ଗୋସ୍ୱାମୀ କବି ତୁଳସୀ ଦାସ "ରାମ ଚରିତ ମାନସ" ନାମକ ରାମାୟଣ ଗ୍ରନ୍ଥ ରଚନା କରିଛନ୍ତି । 'ରାମ ଚରିତ ମାନସ' ରଚନାର ବହୁପୂର୍ବରୁ ଓଡ଼ିଆ ଭାଷାରେ ପଞ୍ଚସଖା–ଯୁଗର କବି ବଳରାମ ଦାସ "ଜଗମୋହନ ରାମାୟଣ" କରିଥିଲେ ବି' ଏହା ପୂର୍ଣ୍ଣମାତ୍ରାରେ ଏକ ଅନୂଦିତ ଗ୍ରନ୍ଥ ନୁହେଁ । 'ତୁଳସୀ ରାମାୟଣ'ର ପ୍ରାଚୀନରୁ ପ୍ରାଚୀନତମ ଓଡ଼ିଆ ଅନୁବାଦ ସଂପର୍କରେ କହିବା ବର୍ତ୍ତମାନ ସମ୍ଭବ ନୁହେଁ । ସନ୍ଥକବି ତୁଳସୀ ଦାସ କୃତ "ରାମ ଚରିତମାନସ" ଗ୍ରନ୍ଥଟି ଉତ୍ତର ଭାରତ ସମେତ ସମଗ୍ର ଭାରତବର୍ଷରେ ବହୁ ଲୋକପ୍ରିୟ ଓ ଆଦରଣୀୟ ଗ୍ରନ୍ଥ । ସମ୍ଭବତଃ ୧୯୬୨ ମସିହା ସୁଦ୍ଧା "ତୁଳସୀ ରାମାୟଣ" ଗ୍ରନ୍ଥର ଦୁଇ ତିନୋଟି ଓଡ଼ିଆ ଅନୁବାଦ ଦେଖିବାକୁ ମିଳେ । ଯେଉଁମାନେ "ତୁଳସୀ ରାମାୟଣ" କୁ ଓଡ଼ିଆରେ ଅନୁବାଦ କରିଛନ୍ତି, ସେମାନଙ୍କ ମଧ୍ୟରେ ଅଛନ୍ତି–କବିଭୂଷଣ ସ୍ୱପ୍ନେଶ୍ୱର ଦାଶ, ପଣ୍ଡିତ ତ୍ରିନାଥ ମିଶ୍ର ଏବଂ ଜଗତ୍‌ବନ୍ଧୁ ମହାପାତ୍ର । ଏହା ବ୍ୟତୀତ "ତୁଳସୀ ରାମାୟଣ"ର ଆହୁରି ଓଡ଼ିଆ ଅନୁବାଦ ଥିବା ଅସମ୍ଭବ ନୁହେଁ ।

କବି ସ୍ୱପ୍ନେଶ୍ୱର ଦାଶ 'ରମ୍ଭେଲା' ଗ୍ରାମରେ ଅବସ୍ଥାନ କରୁଥିବା ସମୟରେ ସମ୍ଭବତଃ ସନ ୧୯୦୫ ରେ ହିନ୍ଦୀ ସାହିତ୍ୟର ଅମୂଲ୍ୟରତ୍ନ "ରାମ ଚରିତ ମାନସ"କୁ ଓଡ଼ିଆରେ ପଦ୍ୟାନୁବାଦ କରିଥିଲେ । ୧୯୧୦ ମସିହାରେ ଚୈତ୍ରପୂର୍ଣ୍ଣିମାଦିନ ରେମଣ୍ଡାସ୍କୁଲ ଛାତ୍ରାବାସରେ "ତୁଳସୀ ରାମାୟଣ" ର ଅନୁବାଦ କାର୍ଯ୍ୟ ସମାପ୍ତ ହୋଇଥିଲା । ଓଡ଼ିଆ ଭାଷା ଓ ସାହିତ୍ୟରେ ତାଙ୍କର ଅପୂର୍ବ ପାଣ୍ଡିତ୍ୟ ଓ ପ୍ରତିଭା ଥିବା ଯୋଗୁଁ କବି ସ୍ୱପ୍ନେଶ୍ୱର ଦାଶ ଯେ ଜଣେ ସଫଳ ଅନୁବାଦକ ଥିଲେ, ତାହା ତାଙ୍କର "ତୁଳସୀ ରାମାୟଣ" ଅନୁବାଦ ଗ୍ରନ୍ଥରୁ ପ୍ରମାଣିତ ହୋଇଯାଏ ।

"ତୁଳସୀ ରାମାୟଣ"ର ପାଣ୍ଡୁଲିପି ପ୍ରଥମେ ଭକ୍ତକବି ମଧୁସୂଦନ ରାଓଙ୍କ ପାଖକୁ ପ୍ରେରିତ ହୋଇଥିଲା । ଭକ୍ତକବି ମଧୁସୂଦନ ଅନୁଦିତ ଗ୍ରନ୍ଥର ପାଣ୍ଡୁଲିପିକୁ ତନ୍ନତନ୍ନ କରି ପାଠ କରିଥିଲେ । ପରିବର୍ତ୍ତନ ଓ ପରିବର୍ଦ୍ଧନର ସୂଚନା ଦେଇ ଆବଶ୍ୟକ ସଂଶୋଧନ ମଧ୍ୟ କରିଥିଲେ ଏବଂ ପରିଶେଷରେ ତାହାର ସତ୍ୟାସତ୍ୟ ନିର୍ଣ୍ଣୟ ପୂର୍ବକ ଗୋଟିଏ ଭୂମିକା ଲେଖିଥିଲେ । ମଧୁସୂଦନ ରାଓ ଲେଖିଥିବା ଭୂମିକାଟି ଏଠାରେ ସଂପୂର୍ଣ୍ଣରୂପେ ଉଦ୍ଧାର କରାଗଲା ।

## ଭୂମିକା

*ସମ୍ବଲପୁରର ପ୍ରଖ୍ୟାତନାମା ପଣ୍ଡିତ ଶ୍ରୀଯୁକ୍ତ ସ୍ୱପ୍ନେଶ୍ୱର ଦାଶ ମହାଶୟଙ୍କ କର୍ତ୍ତୃକ ଓଡ଼ିଆ ଭାଷାରେ ଅନେକଗୁଡ଼ିଏ କବିତା ପୁସ୍ତକ ବିରଚିତ ହୋଇଥିବା କଥା ପାଠକମାନଙ୍କର ସୁବିଦିତ ଥିବ । କିନ୍ତୁ ସେ ଯେ ହିନ୍ଦୀ ଭାଷାରେ ଲିଖିତ ଉତ୍ତର-ପଶ୍ଚିମାଞ୍ଚଳର ସର୍ବଶ୍ରେଷ୍ଠ ମହାକାବ୍ୟକୁ; ଅର୍ଥାତ୍ ମହାସାଧୁ ତୁଳସୀଦାସକୃତ 'ରାମ ଚରିତ-ମାନସ' କୁ ଓଡ଼ିଆ ପଦ୍ୟରେ ଅନୁବାଦ କରି ଉତ୍କଳ-ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିଅଛନ୍ତି, ତାହା ବୋଧହୁଏ ଅନେକଙ୍କର ଅବିଦିତ । ହିନ୍ଦୀ ସାହିତ୍ୟର ଚର୍ଚ୍ଚା ଉତ୍କଳରେ ପ୍ରାୟ ନାହିଁ ଏବଂ ପ୍ରାଚୀନ ହିନ୍ଦୀ-ସାହିତ୍ୟ ଯେ ଅନେକ ଅମୂଲ୍ୟ ରତ୍ନର ଆଧାର, ଏକଥା ମଧ୍ୟ ଉତ୍କଳୀୟ ସାଧାରଣ ପାଠକମଣ୍ଡଳୀର ଅଜ୍ଞାତ । ଏପରି ଅବସ୍ଥାରେ ଯେଉଁ ରସଜ୍ଞ ସାହିତ୍ୟ ସେବକ ହିନ୍ଦୀ-ସାହିତ୍ୟ ସମୀଚୀନ ରୂପେ ଅଧ୍ୟୟନ କରି, ତନ୍ମଧ୍ୟସ୍ଥ ସର୍ବଶ୍ରେଷ୍ଠ ରତ୍ନଦ୍ୱାରା ଉତ୍କଳ-ସାହିତ୍ୟ-ଭଣ୍ଡାରର ଶ୍ରୀବୃଦ୍ଧି ସାଧିବା ନିମିତ୍ତ ବିପୁଳ ଆୟାସ ସ୍ୱୀକାର କରିଅଛନ୍ତି, ସେ ଯେ ପ୍ରକୃତ କୃତୀ ପୁରୁଷ, ଏହା ବୋଲିବା ବାହୁଲ୍ୟ ମାତ୍ର ।*

*ତୁଳସୀଦାସକୃତ 'ରାମ ଚରିତ ମାନସ' ହିନ୍ଦୀ ଭାଷୀ ନରନାରୀ, ଧନୀ-ଦରିଦ୍ର, ଗୃହ-ବିରାଗୀ, ବୃଦ୍ଧ-ଯୁବକ ସମସ୍ତଙ୍କର ପବିତ୍ର ଧର୍ମଗ୍ରନ୍ଥ । ସେ ଗ୍ରନ୍ଥ ସମ୍ବନ୍ଧରେ ବିଖ୍ୟାତ ବୈଦେଶିକ ପଣ୍ଡିତ ଶ୍ରୀଯୁକ୍ତ ଗ୍ରୀୟର୍ସନ ସାହେବଙ୍କ ମନ୍ତବ୍ୟରୁ କିୟଦଂଶ ଏଠାରେ ଉଦ୍ଧୃତ ହେଲା :*

*"ତୁଳସୀ କୃତ ରାମାୟଣ ସମ୍ବନ୍ଧରେ ମୁଁ କୌଣସି ପ୍ରଶଂସାକୁ ଅତ୍ୟୁକ୍ତି ମନେକରି ନପାରେ । ବର୍ତ୍ତମାନ କାଳର ହିନ୍ଦୁସ୍ତାନ ଯେ ସରଳ, ସାଧୁ, ଦୃଢ଼ ଚରିତ୍ର ଏବଂ ଧର୍ମ ଓ ନ୍ୟାୟ ନିମିତ୍ତ ଯୁଦ୍ଧ କରିବା ବିଷୟରେ ଏକାନ୍ତ ନିର୍ଭୀକ ଲୋକମାନଙ୍କର ବାସଭୂମି ହୋଇଅଛି, ତାହା ମହାକବି ତୁଳସୀଙ୍କ ରାମାୟଣ ଯୋଗୁଁ । ତୁଳସୀ ପୃଥିବୀର ସେହି ଅଳ୍ପ ସଂଖ୍ୟକ କବିଙ୍କ ମଧ୍ୟରୁ ଜଣେ; ଯେଉଁମାନେ ମାନବ-ସମୁଦ୍ରର ମହାଗଭୀର ତଳ ପର୍ଯ୍ୟନ୍ତ ପ୍ରବେଶ କରିଅଛନ୍ତି । ତୁଳସୀ ଦାସ ପ୍ରାଚ୍ୟ ଓ ପ୍ରତୀଚ୍ୟ ଉଭୟ ମହାଦେଶର ସମ୍ମାନନୀୟ । ସେ କୌଣସି ବିଶେଷ କାଳର ବା ବିଶେଷ ଦେଶର କବି ନୁହନ୍ତି, ସେ ସକଳ କାଳର ଓ ସକଳ ପୃଥିବୀର କବି । ଯେଉଁଠାରେ ମାନବହୃଦୟର ସମବ୍ୟଥା, ପ୍ରୀତି ଓ ଭକ୍ତି ଥିବ, ସେଠାରେ ତୁଳସୀଦାସକୃତ ରାମାୟଣ ନିଶ୍ଚେ ସମ୍ମାନିତ ହେବ ।"*

*ଏହି ମହାକାବ୍ୟର ଅମୃତରସ ଆସ୍ୱାଦନ କରି କୋଟି କୋଟି ନରନାରୀ ବିମୁଗ୍ଧ ହୋଇଅଛନ୍ତି, ହେଉଅଛନ୍ତି ଓ ହେବେ । କବିଙ୍କର ଅମୃତନିସ୍ୟନ୍ଦିନୀ ତୁଳିକା ଭକ୍ତି, ପ୍ରୀତି, କରୁଣା, ଧୈର୍ଯ୍ୟ, ବୀର୍ଯ୍ୟ, କ୍ଷମା, ବିବେକ, ବୈରାଗ୍ୟ ଓ ବିନୟ ପ୍ରଭୃତି ଦିବ୍ୟ ଗୁଣମାନଙ୍କର ଯେଉଁ ମନୋଜ୍ଞ ଚିତ୍ରମାନ ଅଙ୍କନ କରିଅଛି, ତାହାର ମର୍ମସ୍ପର୍ଶୀ ସୌନ୍ଦର୍ଯ୍ୟ ସହଜରେ ପାଠକର ମନକୁ ଆକର୍ଷଣ କରେ । ତୁଳସୀକୃତ ରାମାୟଣର ବିଚିତ୍ର ଛନ୍ଦୋନୈପୁଣ୍ୟ, ଅନୁପମ ଭାଷା ମାଧୁର୍ଯ୍ୟ ଓ ମିତ୍ରାକ୍ଷର ଶ୍ରବଣ-ସୁଭଗତା ମଧ୍ୟ କାବ୍ୟଗତ ଚରିତ୍ରଚିତ୍ର ଓ ବର୍ଣ୍ଣନାର ସୌନ୍ଦର୍ଯ୍ୟକୁ ପରିବର୍ଦ୍ଧିତ କରିଅଛି । ସ୍ଥୂଳରେ ଉକ୍ତ ମହାକାବ୍ୟ ଯେପରି ସାହିତ୍ୟ-ଜଗତରେ, ସେପରି ଧର୍ମ-ଜଗତରେ ମଧ୍ୟ ଗୋଟିଏ ଅମୂଲ୍ୟ ନିଧି ଅଟେ ।*

*ଅନୁବାଦକ ମହାଶୟ ମୂଳର ଭାବ ଓ ସୌନ୍ଦର୍ଯ୍ୟ ସଂରକ୍ଷଣ କରିବା ବିଷୟରେ ଯଥାସାଧ୍ୟ ଯତ୍ନ କରି ଅଛନ୍ତି ଏବଂ ତାହାଙ୍କର ଯତ୍ନ ବହୁ ପରିମାଣରେ ସଫଳ ହୋଇଅଛି । ସେ ଯେ ଏହି ବୃହତ୍ ଗ୍ରନ୍ଥର ଅନୁବାଦ ରଚନା କରି ଉତ୍କଳ-ସାହିତ୍ୟ-ସଂସାରର ମହୋପକାର ସାଧନ କରିଅଛନ୍ତି, ଏହା ନିଃସନ୍ଦେହ । ମୁଁ ଆଶାକରେଁ ଯେ ତାହାଙ୍କର ପବିତ୍ର ଶ୍ରମର ସୁଫଳ ସ୍ୱରୂପ ଏହି ଉତ୍କଳାନୁବାଦର ପ୍ରକାଶ ଓ ପ୍ରଚାର ବିଷୟରେ ସାହିତ୍ୟପାଳକ ସାହିତ୍ୟସେବୀ ନୃପତିବର୍ଗ ସମୁଚିତ ଆନୁକୂଲ୍ୟ ବିତରଣ କରିବେ ।*

ଶ୍ରୀ ମଧୁସୂଦନ ରାଓ

କଟକ

ତା ୧୪.୯.୧୯୧୨

ଉଦ୍ଧୃତ : ଭକ୍ତକବି ମଧୁସୂଦନ ଗ୍ରନ୍ଥାବଳୀ : ୨୦୧୧, (ସଂ) ଦେବେନ୍ଦ୍ର କୁମାର ଦାଶ (ଗ୍ରନ୍ଥମନ୍ଦିର, କଟକ-୨, ପୃ.୪୦୭-୪୦୮)

ଭକ୍ତକବି ମଧୁସୂଦନ ରାଓଙ୍କଠାରୁ "ତୁଳସୀ ରାମାୟଣ"ର ସଂଶୋଧିତ ପାଣ୍ଡୁଲିପି ତଥା ଉଚ୍ଛ୍ୱସିତ ମନ୍ତବ୍ୟ ପ୍ରାପ୍ତି ପୂର୍ବରୁ ପୁସ୍ତକଟି ପ୍ରକାଶ କରିବା ପାଇଁ ଅଧିକ ତତ୍ପର ହୋଇଛନ୍ତି କବି ସ୍ୱପ୍ନେଶର । ନିଜ ଅନୁଦିତ "ତୁଳସୀ ରାମାୟଣ" ଗ୍ରନ୍ଥଟି କିଭଳି ଭାବେ ପ୍ରକାଶିତ ହେବ, କିଭଳି ପ୍ରତି ଗାଆଁରେ ଲୋକମାନଙ୍କ ପାଖରେ ପହଞ୍ଚିବ, କବି ସ୍ୱପ୍ନେଶ୍ୱର ସେଇ ଚିନ୍ତାରେ ଦିବାରାତି ନିମଗ୍ନ ରହୁଥିଲେ । ଏ ସଂପର୍କରେ ଏକ ଦୀର୍ଘ ପ୍ରସ୍ତାବ ଲେଖି ସାପ୍ତାହିକ ସମ୍ବାଦପତ୍ର-"ସମ୍ବଲପୁର ହିତୈଷିଣୀ"ର ୨୨/୨୪ ସଂଖ୍ୟା : ତା : ୨୩.୩.୧୯୧୧ ରେ ସେହି ପ୍ରସ୍ତାବକୁ ପ୍ରକାଶ କରାଇଥିଲେ । କବି ଭୂଷଣଙ୍କ ଲିଖିତ ଓ "ସମ୍ବଲପୁର ହିତୈଷିଣୀ" ରେ ପ୍ରକାଶିତ ସେହି ମୂଲ୍ୟବାନ ପ୍ରସ୍ତାବଟି ଏଠାରେ ପୂର୍ଣ୍ଣରୂପେ ଉଦ୍ଧାର କରାଗଲା :

## "ତୁଳସୀ ରାମାୟଣ"

ପ୍ରସିଦ୍ଧ ପରମାର୍ଥନିଷ୍ଠ ଭକ୍ତ ପ୍ରବର ଗୋସ୍ୱାମୀ ସ୍ୱର୍ଗତ ତୁଳସୀଦାସ କୃତ ହିନ୍ଦି ରାମାୟଣ ପୁସ୍ତକ ସମକକ୍ଷ ହେବାକୁ ବିଶାଳ ଭାରତରେ ଆଉ କୌଣସି ପ୍ରାକୃତ ଭାଷାର

ରାମାୟଣ ନାହିଁ କହିଲେ ସୁଦ୍ଧା ଅତ୍ୟୁକ୍ତି ହେବ ନାହିଁ । ବାସ୍ତବରେ ଉକ୍ତ ଗ୍ରନ୍ଥ ଯେମନ୍ତ ଭକ୍ତି ରସାଶ୍ରିତ, ଭାବଗର୍ଭକ, ସରସ, ସୁଶ୍ରାବ୍ୟ, ବିବିଧ ନୀତିପ୍ରଦ ଓ ସରଳ,ତେମନ୍ତ ସ୍ୱଭାବୋକ୍ତିପୂର୍ଣ୍ଣ ଶିକ୍ଷଣୀୟ ଓ ଉପାଦେୟ ବିଶେଷତଃ ପ୍ରକୃତି ଚିତ୍ରଣ ବିଷୟରେ ଭକ୍ତି କବିଙ୍କର ଅସାଧାରଣ ପ୍ରତିଭା ଥିଲା । ଅଧିକାଂଶ ସ୍ଥଳରେ କବି ନିଜେ ନୀରବ ଥାଇ ନାୟକ, ନାୟିକା, ଉପନାୟକ ଓ ଉପନାୟିକା ପ୍ରଭୃତିଙ୍କର ଯେଉଁ ନାଟକୀୟ ପ୍ରକୃତି ଚିତ୍ର ଅଙ୍କନ କରିଅଛନ୍ତି, ତାହା ଭାରତୀୟ ସାହିତ୍ୟ ରାଜ୍ୟରେ ଅତୁଳନୀୟ ହୋଇଅଛି । ସାର୍ବଜନୀନ ମୈତ୍ରୀବ୍ରତ, ଧର୍ମ ପରାୟଣତା, ଉଦାରନୀତି, ଭକ୍ତି, ବାତ୍ସଲ୍ୟ ଓ ଅମାୟିକତାର ନିଦର୍ଶନ ତାଙ୍କ ରାମାୟଣରେ ଯେପରି ଉଦ୍ଭାସିତ ହୋଇ ରହିଅଛି, ଅନ୍ୟକୌଣସି ଭାଷାର ରାମାୟଣରେ ସେପରି ଅଛି କି ନା ସନ୍ଦେହ । କି ଗାର୍ହସ୍ଥ୍ୟ ଶିକ୍ଷା, କି ସନ୍ନ୍ୟାସ ଶିକ୍ଷା, କି ନୈତିକ ଶିକ୍ଷା ଏବଂ କି ବୈଦେଶିକ ଶିକ୍ଷାର ଦୃଷ୍ଟାନ୍ତ ତାଙ୍କ ଗ୍ରନ୍ଥରେ ଅତି ସୁଲଭ । କବିବର ସ୍ୱୟଂ ଆଦର୍ଶ ଚରିତ୍ର ଓ ଈଶ୍ୱର ନିର୍ଭର ଥାଇ ତାଙ୍କ କୃତ ରାମାୟଣକୁ ଚରିତ୍ର ଗଠନର ଆଦର୍ଶ ତନ୍ତ୍ର ଏବଂ ଚରିତ୍ର ସଂଶୋଧନର ଆଦର୍ଶ ମନ୍ତ୍ର ସ୍ୱରୂପ କରିଯାଇ ଅଛନ୍ତି । ସେଥି ସକାଶେ ଉକ୍ତଗ୍ରନ୍ଥ ଆଜି ହିନ୍ଦୀ ଜଗତରେ ଗୃହେ ଗୃହେ ପୂଜିତ ହେଉଅଛି । ବିଶେଷତଃ, ଭାରତର ଅଧିକାଂଶ ପ୍ରାଦେଶିକ ଭାଷା ସହିତ ହିନ୍ଦୀ ଭାଷାର ନୈକଟ୍ୟ ଥିବାରୁ ଉକ୍ତ ଗ୍ରନ୍ଥ ପ୍ରାୟ ସମଗ୍ର ଭାରତରେ ଆଦୃତ ହେଉଅଛି । ଏମନ୍ତକି ଉକ୍ତ ଗ୍ରନ୍ଥର ଉପାଦେୟତା ଉପଲବ୍ଧି କରି ଭାରତର ଉନ୍ନତତମ ଭାଷା–ବଂଗଳା ଭାଷା ତାହାକୁ ସମାଦାରରେ ଗ୍ରହଣ କରି ନିଜର ଗୌରବ ବର୍ଦ୍ଧନ କରିଅଛି । ଜଣେ ବ୍ୟବହାରଜୀବୀ କବି ପ୍ରଗାଢ଼ ପରିଶ୍ରମ ସହକାରେ ସେହି ରାମାୟଣର ବଙ୍ଗ ପଦ୍ୟାନୁବାଦ କରି ବଙ୍ଗ ସାହିତ୍ୟର ସୌଷ୍ଠବ ବର୍ଦ୍ଧନ କରିଅଛନ୍ତି ।

ଉତ୍କଳର ନବଯୁଗର ସାହିତ୍ୟ ସମ୍ରାଟ୍ ରାୟ ସ୍ୱର୍ଗତ ରାଧାନାଥ ବାହାଦୂର, ଗୋସ୍ୱାମୀଙ୍କର ରାମାୟଣ ଛଟାରେ ବିମୁଗ୍ଧ ହୋଇ ପ୍ରତିଦିନ ତାହା ପାଠ କରୁଥିଲେ ଏବଂ ଉକ୍ତି ରାମାୟଣରୁ ଦିଓଟି ଋତୁ ବର୍ଣ୍ଣନାର ଅନୁବାଦ କରି "ତୁଳସୀ ସ୍ତବକ" ନାମକ ଖଣ୍ଡିଏ ପଦ୍ୟପୁସ୍ତକ ଲେଖି ଅଛନ୍ତି । ରାଧାନାଥ ଗ୍ରନ୍ଥାବଳୀର ଅନେକ ସ୍ଥଳରେ ସ୍ୱର୍ଗତ ତୁଳସୀଦାସଙ୍କର ଉପମା ଭଣ୍ଡାରସ୍ଥ ଅମୂଲ୍ୟରତ୍ନର ସୁବିମଳ ଜ୍ୟୋତି ଦୃଷ୍ଟ ହୁଏ । ସେ ଯାହାହେଉ ଉକ୍ତ କବିଙ୍କର ସୁପ୍ରସିଦ୍ଧ ଗ୍ରନ୍ଥ ଯେ, ସର୍ବାଂଶରେ ଉପାଦେୟ ଏବଂ ସର୍ବାଦରଣୀୟ ତାହା ବୋଲିବା ବାହୁଲ୍ୟ ମାତ୍ର ।

କିନ୍ତୁ ଗଭୀର ଦୁଃଖର ବିଷୟ ଯେ, ଉତ୍କଳର ଅଧିକାଂଶ ଲୋକ ସ୍ୱପ୍ନରେ ସୁଦ୍ଧା ଅମୂଲ୍ୟ ଗ୍ରନ୍ଥର ନାମତକ୍ ଶୁଣିନାହାନ୍ତି । ବାସ୍ତବରେ କହିବାକୁ ଗଲେ ଭୌଗୋଳିକ ସମ୍ପର୍କବଶତଃ ସମ୍ବଲପୁର ଜିଲ୍ଲା ନିବାସୀଗଣ ଉତ୍କଳର ଅନ୍ୟାନ୍ୟ ଜିଲ୍ଲା ନିବାସୀମାନଙ୍କ ଅପେକ୍ଷା ସ୍ୱର୍ଗତ ତୁଳସୀ ଦାସଙ୍କ ନାମ ସହିତ ସୁପରିଚିତ ।

ସମ୍ବଲପୁର ଜିଲ୍ଲାର ଅନେକ ଶିକ୍ଷିତ ବ୍ୟକ୍ତି ତୁଳସୀ ରାମାୟଣ ପଢ଼ିଥାନ୍ତି, ହେଲେହେଁ ତହିଁର ସମ୍ପୂର୍ଣ୍ଣ ଭାବବୁଝିବା ସର୍ବସାଧାରଣଙ୍କ ପକ୍ଷରେ ସହଜସାଧ୍ୟ ନୁହେଁ ।

କବିଙ୍କର ରଚନାପାଟବ ଅତ୍ୟନ୍ତ ହୃଦୟସ୍ପର୍ଶୀ । ଅନେକ ସ୍ଥଳରେ ସଂକ୍ଷେପ କରିବାକୁ ଯାଇ କବି ମନୋଗତ ଭାବକୁ ସୁପ୍ତ କରିଦେଇ ଅଛନ୍ତି । ଅନେକ ସ୍ଥଳରେ ଗ୍ରାମ ଶବ୍ଦ–ତତ୍କାଳୀନ ବ୍ୟବହୃତ ଶବ୍ଦ ଯୁକ୍ତ ହୋଇ ଏକାକ୍ଷରରେ ଯେମନ୍ତ ସୁଲଳିତ, ପକ୍ଷାନ୍ତରେ ତେମନ୍ତ କ୍ଲିଷ୍ଟ ହୋଇଅଛି ।

ଦୋହା, ଚୌପାଇ, ଛନ୍ଦ ଓ ସୋରଠା ଏହି ଚାରୋଟି ରାଗରେ ଉକ୍ତ ଗ୍ରନ୍ଥ ଲିଖିତ ହୋଇଥିଲେ ହେଁ, ଚୌପାଇ ଓ ଦୋହାର ସଂଖ୍ୟା ସମଧିକ ଅଛି । ବଙ୍ଗ ଅନୁବାଦକ କେବଳ ଦୁଇଟି ରାଗରେ ତାହା ଅନୁବାଦ କରିଅଛନ୍ତି କିନ୍ତୁ ଅନୁବାଦ ଅନେକ ସ୍ଥଳରେ ବିଶୃଙ୍ଖଳ ଓ ଅଶୁଦ୍ଧ ହୋଇଥିବାର ଜଣାପଡ଼େ । କବିଙ୍କର ପ୍ରକୃତଭାବ ଏବଂ ନିଜ ଭାଷାର ସୌଷ୍ଟବ ରକ୍ଷାକରି ଅବିକଳ ପଦ୍ୟାନୁବାଦ କରିବା କେମନ୍ତ ଗୁରୁତର ବ୍ୟାପାର ତାହା ଶିକ୍ଷିତ ବ୍ୟକ୍ତି ମାତ୍ରେ ହିଁ ହୃଦୟଙ୍ଗମ କରିପାରିବେ । ଯେଉଁ ପୂର୍ଣ୍ଣ ମିତ୍ରାକ୍ଷର ରଚନା ବର୍ତ୍ତମାନ ଯୁଗରେ ନବ୍ୟଧରଣର ନାମ ପାଇଅଛି ତାହା ତିନିଶତାଧିକ ବର୍ଷ ରଚିତ ତୁଳସୀ ରାମାୟଣର ଉପାଦାନ ହୋଇଥିଲା ।

ସେହି ଉପାଦେୟ ଗ୍ରନ୍ଥ ଉତ୍କଳବାସୀ ଏବଂ ଉକ୍ତ ଭାଷିମାନଙ୍କୁ ଉପହାର ଦେବା ସକାଶେ ମୁଁ ସାର୍ଦ୍ଧ ଚାରିବର୍ଷକାଳ ଐକାନ୍ତିକ ଆୟାସ ସହକାରେ ଉତ୍କଳ ପଦ୍ୟରେ ଅନୁବାଦିତ କରିଅଛିଁ । ଗ୍ରନ୍ଥର ଆମୂଳଚୂଳ ଚତୁର୍ଦ୍ଦଶାକ୍ଷର ଛନ୍ଦରେ, ଉପଧାସ୍ୱର, ଯତି ଓ ଅନ୍ୱୟ ରକ୍ଷାକରି ରଚିତ ହୋଇଅଛି । ଗ୍ରନ୍ଥାନ୍ତର୍ଗତ କ୍ଷେପକ ଚରିତଗୁଡ଼ିକ (ଯାହାକି ଗ୍ରନ୍ଥାନ୍ତରରୁ ସଂଯୋଜିତ ହୋଇଅଛି) ରୁଚି ଅନୁସାରେ ଭାଷାନ୍ତରିତ ହୋଇଅଛି । ଏହି ସୁମହତ୍–କାର୍ଯ୍ୟରେ ମୁଁ କେତେଦୂର କୃତକାର୍ଯ୍ୟ ହୋଇଅଛି, ସେହି ଅନୁବାଦିତ ପାଣ୍ଡୁଲିପି ଯେଉଁମାନେ ଦେଖିଅଛନ୍ତି ତାହା ସେମାନେ ହିଁ ଜାଣନ୍ତି । ବିଜ୍ଞ ପାଠକମାନଙ୍କ ନିକଟରେ ଥରେ ପରୀକ୍ଷା ପାଇଁ ପ୍ରାର୍ଥନା କରେଁ । କୌଣସି ତାଳପତ୍ର ପୋଥି ଲେଖକ ଦ୍ୱାରା ମୁଁ ସେହି ଅନୁବାଦିତ ରାମାୟଣକୁ ଲେଖାଇ ସାରିଅଛି । ଯେବେ କେହି ତାଳପତ୍ରରେ ଲେଖିନେବାକୁ ଆଗ୍ରହ ପ୍ରକାଶ କରନ୍ତି, ତେବେ ଆନନ୍ଦିତ ମନରେ ମୋର ତାଳପତ୍ର ଆଦର୍ଶ ହେବାକୁ ପ୍ରସ୍ତୁତ ଅଛି ।

ଏବେ "ଉକ୍ତ ଗ୍ରନ୍ଥ କିପରି ମୁଦ୍ରିତ ହୁଏ", ଏହାହି ମୋହର ଏକମାତ୍ର ଚିନ୍ତନୀୟ ବିଷୟ ହୋଇଅଛି । ଏଥିସକାଶେ ମୁଁ ଅନେକ ଯତ୍ନ କରୁଥିଲେ ହେଁ ଯୁଗର ମହିମାରେ ସିଦ୍ଧ ମନୋରଥ ହୋଇପାରୁ ନାହିଁ । ସ୍ତୂପୀକୃତ ପାଣ୍ଡୁଲିପି ଘେନି କେତେକ ଜମିଦାର ଓ ଧନିକ ବ୍ୟକ୍ତିଙ୍କ ନିକଟରେ ଭିକ୍ଷୁ ବେଶରେ ଉପସ୍ଥିତ ହୋଇଅଛିଁ । କେତେକ ବିଶିଷ୍ଟ ବ୍ୟକ୍ତିଙ୍କଠାକୁ ଏବଂ କେତେକ ପ୍ରେସ୍‌କୁ ପତ୍ର ଲେଖି ସାରିଅଛିଁ । ପୁନଶ୍ଚ ଦୁଇଜଣ ରାଜାଙ୍କଠାକୁ ଖଣ୍ଡିଏ ଖଣ୍ଡିଏ ପାଣ୍ଡୁଲିପି ପଠାଇ ବହୁଶ୍ରମ ଲିଖିତ ବାଳକାଣ୍ଡ ବହି ଖଣ୍ଡିକ ହରାଇ ବସିଅଛିଁ । ତେବେ ଆଉ କି ଉପାୟ କରିବି ଯେ, ମୋର କ୍ଷୁଦ୍ର ହୃଦୟରେ କିଛି ସ୍ଥିରକରି ପାରୁନାହିଁ ।

ସପ୍ତକାଣ୍ଡର ମୁଦ୍ରଣବ୍ୟୟ ଦେଢ଼ସହସ୍ରାଧିକ ଟଙ୍କା ପଡ଼ିବାର ଅନୁମିତ ହୋଇଅଛି । ତେବେ ମୋ ପରି ଦୀନପକ୍ଷରେ ଏତେଟଙ୍କାର ଯୋଗାଡ଼ ହେବାର ଆଶା ବିଡ଼ମ୍ବନା ମାତ୍ର । ସୁତରାଂ, ବାଧ୍ୟ ହୋଇ ଏବଂ ମାତୃଭୂମିର ସେବା ସକାଶେ ସ୍ୱତଃପ୍ରବୃତ୍ତ ହୋଇ ନିମ୍ନାଙ୍କିତ ଉପାୟକ୍ରମ ଅବଲମ୍ବନ କରିବାକୁ ମନଃସ୍ଥ କରିଅଛିଁ ।

୧ – ମୁଦ୍ରଣ ସକାଶେ ଯେ କେହି ବର୍ତ୍ତମାନ ଟଙ୍କାଟିଏ ସାହାର୍ଯ୍ୟ ଦେବେ, ସେ ଅର୍ଦ୍ଧମୂଲ୍ୟରେ ପୁସ୍ତକ ପାଇପାରିବେ । ପୁସ୍ତକର ମୂଲ୍ୟ ଆଶାତୀତ ସୁଲଭ ରଖିବାର ମୋର ଅଭିଳାଷ । ସାହାଯ୍ୟ ଟଙ୍କା ମୋଠାକୁ ପଠାଇବାକୁ ହେବ ଓ ସୁବିଧିମତେ ରସିଦ ଦେଇ ରଖିବି । ଯେ ଯେତେଖଣ୍ଡ ପୁସ୍ତକ ନେବାକୁ ଇଚ୍ଛୁକ ସେ ତେତେ ଗୋଟା ଟଙ୍କା ପଠାଇପାରନ୍ତି । ଅର୍ଥାତ୍ ପ୍ରତି ପୁସ୍ତକ ପାଇଁ ଏକଟଙ୍କା ଲେଖାଏଁ ।

୨ – କୌଣସି ପ୍ରେସ୍ ବା କୌଣସି ମହାଜନ ଯେବେ ତାହା ପ୍ରକାଶିତ କରିବାକୁ ଇଚ୍ଛା କରନ୍ତି, ତେବେ ମୁଁ ପୁସ୍ତକର ସ୍ୱତ୍ୱ ଏକକାଳୀନ ବା ଅଂଶ ନେଇ ଦେବାକୁ ପ୍ରସ୍ତୁତ । ସେଥିସକାଶେ ମୋଠାକୁ ପତ୍ର ଲେଖି ବନ୍ଦୋବସ୍ତ କରିବାକୁ ହେବ । ପାଣ୍ଡୁଲେଖ୍ୟ ଗୁଡ଼ିକ ପରିଶୁଦ୍ଧ ଓ ପରିଷ୍କୃତ ଭାବରେ ଲିଖିତ ହୋଇଅଛି ।

୩– କିନ୍ତୁ ଯେବେ କୌଣସି ସ୍ୱଦେଶ–ହିତୈଷୀ ଦାନବୀର ମହାପୁରୁଷ ଉକ୍ତ ଗ୍ରନ୍ଥ ସ୍ୱବ୍ୟୟରେ ମୁଦ୍ରିତ କରାଇ ସପାତ୍ରରେ ବିନାମୂଲ୍ୟରେ ବିତରଣ କରିବାକୁ ପ୍ରତିଜ୍ଞା ହୁଅନ୍ତି, ତେବେ ମୁଁ ପରମ ପ୍ରଫୁଲ୍ଲ ହୃଦୟରେ ମୋହର ସମୁଦାୟ ସ୍ୱତ୍ୱ ତ୍ୟାଗକରି ଚିରଦିନ ସକାଶେ ଗ୍ରନ୍ଥ ଖଣ୍ଡିକ ପ୍ରଦାନ କରିବି । ପୁସ୍ତକ ଦେଖିବାକୁ ଯେବେ କାହାରି ସ୍ପୃହା ଥାଏ ଆଦେଶ ଦେଲେ ପଠାଇଦେବି ।

ପ୍ରାର୍ଥୀ
ଶ୍ରୀ ସ୍ୱପ୍ନେଶ୍ୱର ଦାଶ ଶର୍ମା
କବିଭୂଷଣ, ଛାନ୍ଦଭୂଷଣ
ବାଣୀଭୂଷଣ,ପଦ୍ୟାଳଙ୍କାର
ହେଡ୍‌ମାଷ୍ଟର
ମି : ଭ : ସ୍କୁଲ, ରେମଣ୍ଡା,
ତା ୨୩.୩.୧୧ ଇ :

ଏହି ସମ୍ବାଦ 'ସମ୍ବଲପୁର ହିତୈଷିଣୀ' ରେ ପ୍ରକାଶିତ ହେବା ପରେ ପରେ ଭକ୍ତକବି ମଧୁସୂଦନ ରାଓଙ୍କ ବ୍ୟତୀତ, କବି ଫକୀର ମୋହନ, କବି ଗଙ୍ଗାଧର, କବି ନନ୍ଦକିଶୋର ବଳ ପ୍ରମୁଖ ସାହିତ୍ୟିକ 'ତୁଳସୀ ରାମାୟଣ' ର ଓଡ଼ିଆ ଅନୁବାଦ ସଂପର୍କରେ ଅବଗତ ହୋଇଛନ୍ତି । ପୁଣି ଆଦିକାଣ୍ଡର ପାଣ୍ଡୁଲିପିକୁ କବି ସ୍ୱପ୍ନେଶ୍ୱର, ଭକ୍ତକବି ମଧୁସୂଦନ

ରାଓ ଏବଂ ପଲ୍ଲୀକବି ନନ୍ଦକିଶୋର ବଳଙ୍କ ପାଖକୁ ପଠାଇଛନ୍ତି ଆବଶ୍ୟକ ସଂଶୋଧନ ଓ ପରିବର୍ତ୍ତନ ସକାଶେ । ମଧୁସୂଦନ ରାଓ କଟକରୁ ସ୍ୱପ୍ନେଶ୍ୱରଙ୍କୁ ଲେଖିଛନ୍ତି :

କଟକ
୧୨.୮.୧୯୧୧

ଶ୍ରଦ୍ଧେୟ ମହାଶୟ,

*ଆପଣଙ୍କର ଅନୁଗ୍ରହ ଲିପି ଯଥା ସମୟରେ ପାଇଥିଲି । ତହିଁ ଉତ୍ତରେ ଆପଣଙ୍କ ଅନୁଦିତ ତୁଳସୀକୃତ ରାମାୟଣ ଆଦିକାଣ୍ଡର ପାଣ୍ଡୁଲିପି ପାଇ କିୟଦଂଶ ମାତ୍ର ଦେଖିଅଛି, ଏପରି ସମୟରେ ଆପଣଙ୍କ ସହକାରୀ ଶିକ୍ଷକଙ୍କ ହସ୍ତରେ ତାହା ପ୍ରତ୍ୟର୍ପଣ କରିବାକୁ ମୁଁ ଯେଉଁ ଅଂଶ ପଢ଼ିଅଛି ସେଥିରୁ ମୋର ଏହି ଆଶା ହୋଇଅଛି ଯେ ଆପଣଙ୍କ ଅନୁବାଦ ଯଥାଯଥ ହୋଇଅଛି ଏବଂ ଅନୁବାଦର ଭାଷା ଯେପରି ପ୍ରାଞ୍ଜଳ ସେହିପରି ମଧୁର ହୋଇଅଛି । ତୁଳସୀ ରାମାୟଣ ପରି ସର୍ବଥା ଉପାଦେୟ ଓ ମନୋଜ୍ଞ ମହାକାବ୍ୟ ଦେଶୀୟ ଭାଷା ସାହିତ୍ୟରେ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍କଳରେ ତାହାର ପ୍ରଚାର ନିମିତ୍ତ ଆପଣଙ୍କର ପବିତ୍ର ପ୍ରୟାସ ସମୀଚୀନ ସଫଳ ହେଉ, ଏହା ମୋର ଐକାନ୍ତିକ ପ୍ରାର୍ଥନା । ଆଶାକରେଁ, ତାହା ଶୀଘ୍ର ମୁଦ୍ରିତ ହୋଇ ସର୍ବତ୍ର ସାଦରେ ଗୃହୀତ ହେବ । ଗୃହେ ଗୃହେ ପଠିତ ହେବ ଏବଂ ତଦ୍ୱାରା ଲେଖକଙ୍କର ହୃଦୟ ମହୋଦାର ଭକ୍ତି ରସରେ ରଞ୍ଜିତ ହୋଇ କୃତାର୍ଥ ହେବ । ପରାତ୍ପର ଆପଣଙ୍କ ପବିତ୍ର ଶ୍ରମ ଉପରେ ଶୁଭାଶୀର୍ବାଦ ବର୍ଷଣ କରନ୍ତୁ ।*

ଉକ୍ତ ଗ୍ରନ୍ଥର ମୁଦ୍ରଣ ବିଷୟରେ କି ପ୍ରକାର ଉଦ୍ୟମ ହୋଇଅଛି ତାହା ମୋତେ ଜଣାନାହିଁ ।

ମୋର ହୃଦୟର ନମସ୍କାର ଗ୍ରହଣ କରନ୍ତୁ । ଆଶାକରେଁ, ସକୁଟୁମ୍ବ କୁଶଳରେ ଅଛନ୍ତି ।

ପ୍ରେମାକାଙ୍କ୍ଷୀ
ଶ୍ରୀ ମଧୁସୂଦନ ରାଓ

ଭକ୍ତକବି ମଧୁସୂଦନ କବି ସ୍ୱପ୍ନେଶ୍ୱରଙ୍କୁ ବହୁ ବ୍ୟକ୍ତିଗତ ପତ୍ର ମଧ୍ୟ ଲେଖିଛନ୍ତି । ମାତ୍ର ସେଗୁଡ଼ିକ ଯତ୍ନ ଅଭାବରୁ ସଂପୂର୍ଣ୍ଣ ନଷ୍ଟ ହୋଇ ଯାଇଥିବାରୁ ସେହି ପତ୍ରାବଳୀ ସଂପର୍କରେ ଏଠାରେ ଆଉ ଆଲୋଚନାର ପରିସରକୁ ଅଣାଯାଇ ନାହିଁ ।

ପଲ୍ଲୀକବି ନନ୍ଦକିଶୋର ବଳ ମଧ୍ୟ ବାଲେଶ୍ୱରରୁ ଖଣ୍ଡେ ପତ୍ରରେ ଲେଖିଛନ୍ତି :

ମହାଶୟ,

*ଆପଣଙ୍କର ତୁଳସୀ ରାମାୟଣର ଅନୁବାଦ ପାଠକରି ମୁଁ ବିମୁଗ୍ଧ ହୋଇଅଛି । ଏଥିରେ ସଂଶୟ ନାହିଁ ଯେ, ଆପଣ ତୁଳସୀ ରାମାୟଣ ସଦୃଶ ସୁଧାମୟ ସଦ୍‌ଗ୍ରନ୍ଥର ଅନୁବାଦ ଉତ୍କଳୀୟ ପାଠକ–ସମାଜ ସମ୍ମୁଖରେ ଉପସ୍ଥାପିତ କରିବା ଦ୍ୱାରା ସେମାନଙ୍କୁ ଋଣୀ କରାଇ ଅଛନ୍ତି । ଏତେ ବୃହତ୍ ଗ୍ରନ୍ଥର ପଦ୍ୟାନୁବାଦରେ ଯେଉଁ କଠିନ ପରିଶ୍ରମ, ଅସୀମ ଅଧ୍ୟବସାୟ ଓ ଗଭୀର ଅଭିନିବେଶର ପ୍ରୟୋଜନ ହୋଇଥିବ, ତନ୍ନିମିତ୍ତ ଆପଣ ପାଠକ–ସାଧାରଣଙ୍କର ପ୍ରଶଂସାର୍ହ; ମାଦୃକ୍ ପାଠକର ସମ୍ମାନାର୍ହ । ଆପଣଙ୍କର ଭାଷା ସରଳ ଓ ପ୍ରାଞ୍ଜଳ । ଅନୁବାଦ ହେଲେ ହେଁ, ବହୁସ୍ଥାନରେ ଆପଣଙ୍କ ଗ୍ରନ୍ଥରେ କବି ଜନୋଚିତ କଳ୍ପନାବିଳାସର ଅଭାବ ନାହିଁ । ଭୋବଦ୍‌କାଳ କବିବର ରାଧାନାଥଙ୍କ ବର୍ଷା ଓ ଶରତ୍ ଋତୁଦ୍ୱୟର ଅନୁବାଦରେ ଉତ୍କଳୀୟ ପାଠକଗଣ ପରିତୃପ୍ତ ହୋଇଥିଲେ । ଏବେ ସମସ୍ତ ତୁଳସୀ ରାମାୟଣର ଅନୁବାଦ ଉତ୍କଳୀୟ ସାରସ୍ୱତ ଧାମରେ ସୌରଭ ବିସ୍ତାର କରିବ ।*

ଆପଣଙ୍କର
ଶ୍ରୀ ନନ୍ଦକିଶୋର ବଳ

ତା ୨୯.୮.୧୯୧୨

ହେଡ୍‌ମାଷ୍ଟର,
ବାଲେଶ୍ୱର ଜିଲ୍ଲା ସ୍କୁଲ

''ସମ୍ବଲପୁର ହିତୈଷିଣୀ'' ରେ ଏହି ମୂଲ୍ୟବାନ ପ୍ରସ୍ତାବଟି ପ୍ରକାଶ ପାଇବା ପରେ ପଶ୍ଚିମ ଓଡ଼ିଶା ସମେତ ସମଗ୍ର ଓଡ଼ିଶାର ବଦାନ୍ୟ ବ୍ୟକ୍ତିମାନେ ''ତୁଳସୀ ରାମାୟଣ''ର ଓଡ଼ିଆ ଅନୁବାଦ ଗ୍ରନ୍ଥ ପ୍ରକାଶନ ପାଇଁ କବିଙ୍କୁ ଆର୍ଥିକ ସାହାଯ୍ୟ ଯୋଗାଇ ଦେବାପାଇଁ ସାଧୁବାଦ ଜଣାଇଛନ୍ତି । ସେମାନଙ୍କ ମଧ୍ୟରୁ ସମ୍ବଲପୁରର ବହୁ ମାନ୍ୟଗଣ୍ୟ ମହାଜନ ଶ୍ରୀ ବଳଭଦ୍ର ସୂପକାର (ବଳଭଦ୍ର ସୁଆର–ଇଂ କରୁଣାକର ସୂପକାରଙ୍କ ପୂର୍ବଜ) କବିଙ୍କ ପୁସ୍ତକ ପ୍ରକାଶନ ପାଇଁ ପ୍ରତିଶ୍ରୁତି ଦେଇଛନ୍ତି । ମହାଜନ ବଳଭଦ୍ର ସୂପକାରଙ୍କ ସଂପର୍କରେ 'ସମ୍ବଲପୁର ହିତୈଷିଣୀ' ରେ ଏକ ସମ୍ବାଦ ପ୍ରକାଶିତ ହୋଇଛି । ସମ୍ବାଦଟି 'ସମ୍ବଲପୁର ସମ୍ବାଦ' ଶୀର୍ଷକରେ ମୁଦ୍ରିତ । ଯଥା:

ଯଥା :

*''ଭକ୍ତକବି ପୂଜନୀୟ ଶ୍ରୀ ତୁଳସୀଦାସଙ୍କ ହିନ୍ଦୀ ରାମାୟଣ ଏଠାକାର ଶ୍ରୀଯୁକ୍ତ ସ୍ୱପ୍ନେଶ୍ୱର ଦାଶ କବିଭୂଷଣ ମହାଶୟ ଉତ୍କଳାନୁବାଦ କରି ପ୍ରକାଶିତ କରିଦେବା ସକାଶେ ସ୍ଥାନୀୟ*

*ବଦାନ୍ୟ, ଦେଶସେବକଙ୍କୁ ଅନୁରୋଧ କରିଥିଲେ । ସୁଖର ବିଷୟ, ଏଠାକାର ଲକ୍ଷ୍ମୀପୁତ୍ର, ଧାର୍ମିକପ୍ରବର ଶ୍ରୀଯୁକ୍ତ ବଳଭଦ୍ର ସୂପକାର ମହାଜନ ମହୋଦୟ "ବାଳକାଣ୍ଡ" ପୁସ୍ତକ ଖଣ୍ଡିଏ ସ୍ୱବ୍ୟୟରେ ଛାପା କରାଇ ଦେବାକୁ ପ୍ରତିଶ୍ରୁତ ହୋଇ ଅଛନ୍ତି । ଈଶ୍ୱର ବାବୁ ମହାଶୟଙ୍କ ଉତ୍ତରୋତ୍ତର ଶ୍ରୀବୃଦ୍ଧି ସାଧନ କରନ୍ତୁ, ଏହାହିଁ ଆମ୍ଭମାନଙ୍କର ଆନ୍ତରିକ କାମନା ।"*

(ସମ୍ବଲପୁର ହିତୈଷିଣୀ: ୨୪/୭ : ତା ୧୪.୧୨.୧୯୧୨ : ଶନିବାର)

ଏଠାରେ ରାମାୟଣ ଗ୍ରନ୍ଥର ଯେଉଁ କାଣ୍ଡର କଥା କୁହାଯାଇଛି, ସେତେବେଳେ ତାହା ସ୍ୱତନ୍ତ୍ର ଭାବରେ ପ୍ରକାଶିତ ହୋଇଥିଲା କି ନାହିଁ, ବର୍ତ୍ତମାନ କହିବା ସମ୍ଭବ ନୁହେଁ । ସ୍ୱପ୍ନେଶ୍ୱରଙ୍କ "ତୁଳସୀ ରାମାୟଣ" ଗ୍ରନ୍ଥଟି ବହୁ ପୂର୍ବରୁ ଅନୁଦିତ ହୋଇଥିଲେ ହେଁ ଅନେକ ବିଳମ୍ବରେ ଲୋକଲୋଚନକୁ ଆସିପାରିଥିଲା । ୧୯୨୪ ମସିହାରେ ଧରାକୋଟ ରାଜା ଶ୍ରୀ ଶ୍ରୀ ମଦନମୋହନ ସିଂହଦେଓଙ୍କ ସଂପୂର୍ଣ୍ଣ ବ୍ୟୟରେ ସ୍ୱପ୍ନେଶ୍ୱରଙ୍କ ଅନୁଦିତ "ତୁଳସୀ ରାମାୟଣ" ଗ୍ରନ୍ଥ ପ୍ରକାଶପାଇଛି । କବିଭୂଷଣ ରାଜା ମଦନମୋହନ ସିଂହଦେଓଙ୍କ ନିକଟରେ ନିଜର ଗଭୀର କୃତଜ୍ଞତା ପ୍ରକାଶ କରିଅଛନ୍ତି । କବିଭୂଷଣ "କୃତଜ୍ଞତା ସ୍ୱୀକାର" ଶୀର୍ଷକରେ ଲେଖିଥିଲେ :

'ତୁଳସୀ ରାମାୟଣ' ଅନୁବାଦ କାର୍ଯ୍ୟରେ ହସ୍ତକ୍ଷେପ କଲା ଦିନାବଧି ପୂର୍ଣ୍ଣ ଷୋଳବର୍ଷ କାଳ ମୁଁ ଯେ ନିପୁଣ୍ୟ ଯାଚକତା ସ୍ୱୀକାର କରିଅଛିଁ, ତହିଁର ଅତୀତ ଇତିବୃତ୍ତ ପ୍ରକାଶ କରି ଭାବୀ ସାହିତ୍ୟଜୀବୀମାନଙ୍କୁ ଅନୁତ୍ସାହିତ କରିବାକୁ ମୁଁ ଇଚ୍ଛୁକ ନୁହେଁ । ସେ ଯାହାହେଉ ଏତେଦିନେ ମୋହର ଶ୍ରମ ସଫଳ ହୋଇଅଛି । ଗଂଜାମ ଅନ୍ତର୍ଗତ ଧରାକୋଟ ରାଜ୍ୟର ଉଦୀୟମାନ ନରପତି ଶ୍ରୀମାନ୍ ଶ୍ରୀ ମଦନମୋହନ ସିଂହଦେବ ମହୋଦୟ ସପ୍ତକାଣ୍ଡ ତୁଳସୀ ରାମାୟଣ ପୁସ୍ତକ (ଏକ ସହସ୍ର ଖଣ୍ଡ) ମୁଦ୍ରଣର ସମସ୍ତ ବ୍ୟୟଭାର ବହନ କରି ମତେ ଚୀର କୃତଜ୍ଞତା ପାଶରେ ଆବଦ୍ଧ କରିଅଛନ୍ତି ।

ସ୍ୱପ୍ନେଶ୍ୱର ଦାଶ ଶର୍ମା, କବିଭୂଷଣ

ରୋହିଣିଆ, ସମ୍ବଲପୁର
ତା ୧୪.୨.୧୯୨୨

"ତୁଳସୀ ରାମାୟଣ"ର ଓଡ଼ିଆ ଅନୁବାଦରେ କବିଭୂଷଣ ଲେଖିଛନ୍ତି :

**ବନ୍ଦନା**

"ଜୟ ଜଟାଜୂଟ, ଗଙ୍ଗା–ଶଶି–ଶିରହର ।
ଅର୍ଦ୍ଧାଙ୍ଗେ ଶୋଭିତ ଉମା ଅଙ୍କେ ଗଣେଶ୍ୱର ।।

ଗୌର ଅଙ୍ଗେ ସିତ ଭସ୍ମ ଅହି ଆଭରଣ ।
ଅନଙ୍ଗ–ଦହନ–ହର ପଶୁଛି ଶରଣ ।।
ଶିବ–ଦାନୀ ଶିବା–ସ୍ୱାମୀ ଅଭୟ ଦାୟକ ।
ତବ ପଦ–ଅରବିନ୍ଦ ବିଜୟ–କାରକ ।।
ଜନକ–ନନ୍ଦିନୀ–ଚିତ୍ତ–ଚୋରା ରସଗୀତ ।
ବର୍ଣ୍ଣିବାକୁ ଇଛଇ ମୁଁ, ପୂରାଅ ମୋ ଚିତ୍ତ ।।

ଅନୁବାଦ

ଜୟ ସିଦ୍ଧିଦାତା କରି ମୁଖ ଗଣେଶ୍ୱର ।
ହେ ବୁଦ୍ଧି–ଗୁଣ–ସଦନ ଅନୁକମ୍ପା କର ।।
ଜୟ ରାମଚନ୍ଦ୍ର ଜୟ ଦଶରଥ ବାଳ ।
ତବ କୃପାବଳେ ମୂକ ହୁଅଇ ବାଚାଳ ।।
(ତୁ:ରା:–୨ୟ ସଂ: ପୃଷ୍ଠା–୩)

କବି ସ୍ୱପ୍ନେଶ୍ୱରଙ୍କ ଜୀବଦ୍ଦଶାରେ ''ତୁଳସୀ ରାମାୟଣ''ର ଦୁଇଟି ସଂସ୍କରଣ ପ୍ରକାଶିତ ହୋଇ ବେଶ୍ ଲୋକପ୍ରିୟ ହୋଇପାରିଥିଲା । ପ୍ରଥମ ସଂସ୍କରଣ ୧୯୨୪ ମସିହା, ଧରାକୋଟ ରାଜାଙ୍କ ସଂପୂର୍ଣ୍ଣ ବ୍ୟୟରେ ଏବଂ ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଛି ୧୯୬୦ ମସିହା, ବିଜୟାଦଶମୀ ଦିନ, କଟକ ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର ଆନୁକୂଲ୍ୟରେ । ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେବାପରେ ତା'ର ଏକ ବିଜ୍ଞାପନ 'ଝଙ୍କାର' ପତ୍ରିକାର ତ୍ରୟୋଦଶ ବର୍ଷ ପ୍ରଥମ ସଂଖ୍ୟା–ଏପ୍ରିଲ ୧୯୬୧ରେ ଦେଖିବାକୁ ମିଳେ । ସେହି ବିଜ୍ଞାପନରେ ଲେଖାଥିଲା :

> ପ୍ରକାଶ ପାଇଲା ! ପ୍ରକାଶ ପାଇଲା ! ବିଶ୍ୱ–ସାହିତ୍ୟର ଅମୂଲ୍ୟନିଧି ଆଧ୍ୟାତ୍ମିକ ରାଜ୍ୟର ସର୍ବୋତ୍ତମ ବିଚାରଧାରା ପୂର୍ଣ୍ଣ ଶ୍ରେଷ୍ଠ ଭକ୍ତିଗ୍ରନ୍ଥ ଗୋସ୍ୱାମୀ ଶ୍ରୀତୁଳସୀ ଦାସକୃତ ଶ୍ରୀ ରାମଚରିତ ମାନସର ଉତ୍କଳାନୁବାଦ ତୁଳସୀ ରାମାୟଣ । ଅନୁବାଦକ ପଣ୍ଡିତ ସ୍ୱପ୍ନେଶ୍ୱରଦାଶ, 'କବିଭୂଷଣ' ।

(ସଂଶୋଧିତ ଦ୍ୱିତୀୟ ସଂସ୍କରଣ)
ମୂଲ୍ୟ : ପନ୍ଦର ଟଙ୍କା ।

ଏଠାରେ ସୂଚନାଯୋଗ୍ୟ ଯେ, ''ତୁଳସୀ ରାମାୟଣ'' ପ୍ରଥମ ସଂସ୍କରଣର ମୂଲ୍ୟ ତିନିଟଙ୍କା ଥିବାବେଳେ ଦ୍ୱିତୀୟ ସଂସ୍କରଣର ମୂଲ୍ୟ ପନ୍ଦରଟଙ୍କା ରଖାଯାଇଛି ।

## ସୋନପୁର ଦରବାର ସହିତ ସଂପର୍କ :

ମହାରାଜା ପ୍ରତାପରୁଦ୍ର ଦେବ ଓ ରାଣୀ ଅମୂଲ୍ୟମଣି ଦେବୀଙ୍କର ଜ୍ୟେଷ୍ଠପୁତ୍ର ଭାବରେ ରାଜା ଶ୍ରୀବୀରମିତ୍ରୋଦୟ ସିଂହଦେବ ସୋନପୁର ରାଜବଂଶର ବହୁ ପ୍ରତିଭା ସଂପନ୍ନ ବ୍ୟକ୍ତିତ୍ୱ । ରାଜା ବୀରମିତ୍ରୋଦୟ ସିଂହଦେବଙ୍କ ରାଜତ୍ୱକାଳ ହେଉଛି ୧୯୦୨–୧୯୩୭ । ଏହାକୁ ସୋନପୁର ଇତିହାସରେ 'ସୁବର୍ଣ୍ଣଯୁଗ' କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ୧୯୦୨ ମସିହାରୁ ସୋନପୁର ମହାରାଜା ଶ୍ରୀ ବୀର ମିତ୍ରୋଦୟ ସିଂହଦେବଙ୍କ ସହିତ କବି ସ୍ୱପ୍ନେଶ୍ୱରଙ୍କ ସୁସଂପର୍କ ରହିଥିଲା । ସୋନପୁର ମହାରାଜା ଶ୍ରୀ ସିଂହଦେବ ଜଣେ ଉତ୍ତମ ଶାସକ ହେବା ସଂଗେସଂଗେ ଜଣେ ଉଚ୍ଚକୋଟୀର ସାରସ୍ୱତ ସାଧକ ଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ତାଙ୍କର ଆର୍ଥିକ ସାହାଯ୍ୟ ଅବର୍ଣ୍ଣନୀୟ । ରାଜକୋଷର ଅର୍ଥରେ ସୋନପୁର ଦରବାର ସୌଜନ୍ୟରୁ ଅନେକ ମୌଳିକ ତଥା ଉପାଦେୟ ଗ୍ରନ୍ଥ ସବୁ ପ୍ରକାଶିତ ହୋଇଛି । ସୋନପୁରରେ ନିଜେ ମୁଦ୍ରାଯନ୍ତ୍ର ସ୍ଥାପନ କରି ସେ ପୁସ୍ତକ ପ୍ରକାଶନର ବ୍ୟବସ୍ଥା କରିଛନ୍ତି । ମୌଳିକ ସାହିତ୍ୟ ସୃଷ୍ଟି କରିବା ପାଇଁ ସମକାଳର ଲେଖକମାନଙ୍କୁ ପ୍ରେରଣା ଦେଇଛନ୍ତି । ବୀର ମିତ୍ରୋଦୟ ସିଂହଦେବ ତାଙ୍କର ଜ୍ୟେଷ୍ଠପୁତ୍ର ସୋମଭୂଷଣ ସିଂହଦେବଙ୍କ ନାମରେ ନିଜେ ସ୍ଥାପନ କରିଥିବା ପ୍ରେସ୍‌ର ନାମ "ସୋମଭୂଷଣ ପ୍ରେସ୍" ରଖିଥିଲେ । ସୋନପୁରରେ ନୂତନ ପ୍ରେସ୍ ସ୍ଥାପନ ସଂପର୍କରେ ଦେବଗଡ଼ରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର 'ସମ୍ବଲପୁର ହିତୈଷିଣୀ' ଘୋଷଣା କରି କହିଛି :

### ସୋନପୁରରେ ନୂତନ ପ୍ରେସ୍

"ଆନନ୍ଦର ବିଷୟ ସ୍ୱର୍ଣ୍ଣପୁରରେ ସୋମଭୂଷଣ ପ୍ରେସ୍ ନାମକ ଗୋଟିଏ ନୂତନ ମୁଦ୍ରାଯନ୍ତ୍ର ସ୍ଥାପିତ ହୋଇଅଛି । ଉକ୍ତ ପ୍ରେସ୍‌ର ଜନ୍ମୋତ୍ସବୋପଲକ୍ଷେ ବିଦ୍ୟୋତ୍ସାହୀ ମହାରାଜ ଓ ଶ୍ରୀମାନ୍ ବୀର ମିତ୍ରୋଦୟ ସିଂହଦେବ ମହୋଦୟଙ୍କ ସ୍ୱରଚିତ ଉଦ୍‌ବୋଧନ କବିତା ପ୍ରାପ୍ତ ହୋଇ ଏହି ପତ୍ରିକାର ସ୍ଥାନାନ୍ତରେ ପାଠକମାନଙ୍କ ଅବଗତି ନିମନ୍ତେ ପ୍ରକାଶ କଲୁଁ ।"

(ସମ୍ବଲପୁର ହିତୈଷିଣୀ: ୨୨/୧୫ : ତା. ୨୮.୧.୧୯୧୧)

ସୋନପୁର ମହାରାଜା ସୋନପୁରରେ ପ୍ରେସ୍ ସ୍ଥାପନ କରି ପ୍ରଥମେ ଖଣ୍ଡେ ସମାଚାର ପତ୍ରିକା ପ୍ରକାଶ ସହିତ କବି ଗଙ୍ଗାଧରଙ୍କୁ ଏ କାର୍ଯ୍ୟରେ ନିଯୁକ୍ତ କରିବା ପାଇଁ ମନସ୍ଥ କରିଥିଲେ ଏ ସଂପର୍କରେ କବିପୁତ୍ର ସ୍ୱର୍ଗୀୟ ଭଗବାନ ମେହେର ତାଙ୍କ ଆତ୍ମଚରିତ "ପିତୃ ପ୍ରସଙ୍ଗ"ରେ ଠାଏ ଉଲ୍ଲେଖ କରି କହିଛନ୍ତି :

*''ପିତା ଦ୍ୱିତୀୟଥର ସମ୍ବଲପୁରରେ ଅବସ୍ଥାନ କରୁଥିବା ସମୟରେ (ସ୍ନ ୧୯୧୧ ସାଲ ମାର୍ଚ୍ଚ ମାସରେ) ପୂର୍ବତନ ସୋନପୁର ଷ୍ଟେଟ୍‌ର ରାଜା ବୀରମିତ୍ରୋଦୟ ସିଂହଦେବ ସମ୍ବଲପୁରରୁ ''ଉତ୍କଳଦର୍ପଣ'' ପ୍ରେସ୍‌ଟି କ୍ରୟକରି ତାଙ୍କ ପୁତ୍ରଙ୍କ ନାମାନୁଯାୟୀ ''ସୋମଭୂଷଣ'' ନାମରେ ପ୍ରେସ୍ ସ୍ଥାପନ କରିଥିଲେ । ଉକ୍ତ ପ୍ରେସ୍‌ରୁ ସେ ଗୋଟିଏ ସମାଚାର ପତ୍ର ପ୍ରକାଶିତ କରିବା ପାଇଁ ଇଚ୍ଛା ପୋଷଣ କରି ତହିଁରେ ପିତାଙ୍କୁ ମାସିକ ଅନ୍ୟୁନ ୫୦ ଟଙ୍କା ଦେଇ ସଂପାଦକ ଭାବରେ ନିଯୁକ୍ତ କରିବା ପାଇଁ ଅଭିଳାଷୀ ହୋଇଥିଲେ । କିନ୍ତୁ ସମ୍ଭବତଃ ପିତା ସେତେବେଳେ ଏକ ସରକାରୀ ଚାକିରୀ ପରିତ୍ୟାଗ କରିବା ପକ୍ଷପାତୀ ହୋଇ ନଥିଲେ ।''*

–(ପିତୃପ୍ରସଙ୍ଗ, ୧ମ ସଂ୧୯୭୭,ପୃଷ୍ଠା–୧୩୬)
ଓଡ଼ିଶା ବୁକ୍‌ଷ୍ଟୋର୍,କଟକ

ସୋନପୁର ମହାରାଜାଙ୍କର ଜ୍ୟେଷ୍ଠପୁତ୍ର ସୋମଭୂଷଣ ସିଂହଦେବ, ତା.୧୩.୧୦.୧୮୯୬ ଖ୍ରୀଷ୍ଟାବ୍ଦ (ଆଶ୍ୱିନ ଶୁକ୍ଳପକ୍ଷ)ରେ ଜନ୍ମଗ୍ରହଣ କରି ମାତ୍ର ୨୨ ବର୍ଷ ବୟସରେ ତା ୨୯.୧୦.୧୯୧୮ ମସିହା (କାର୍ତ୍ତିକ ଏକାଦଶୀ)ରେ ସ୍ୱର୍ଗାରୋହଣ କରିଥିଲେ । ମହାରାଜା ବୀରମିତ୍ରଦେବ ତାଙ୍କ ଜ୍ୟେଷ୍ଠପୁତ୍ର ସୋମଭୂଷଣ ସିଂହଦେବଙ୍କ ଆକସ୍ମିକ ବିୟୋଗରେ ଭାଙ୍ଗିପଡ଼ିଥିଲେ । ତେଣୁ 'ସୋମାଭୂଷଣ' ପ୍ରେସ୍‌ଟିକୁ ଆଉ ଉପଯୁକ୍ତ ମନେ ନକରି ତାକୁ ଦାନ କରିଦେଇଛନ୍ତି କବି ସ୍ୱପ୍ନେଶ୍ୱରଙ୍କୁ । ଏହି ପ୍ରେସ୍‌ଟି ପୂର୍ବେ ସମ୍ବଲପୁର ସହରରେ 'ଉତ୍କଳ ଦର୍ପଣ ପ୍ରେସ୍' ନାମରେ ଦୁଇବର୍ଷକାଳ ଚଳିଥିଲା । ସମ୍ଭବତଃ ୧୯୨୧ ମସିହା ଆଡ଼କୁ ମହାରାଜା କୁମାର ଶ୍ରୀ ସୁଧାଂଶୁଶେଖର ସିଂହଦେବଙ୍କ ପରାମର୍ଶରେ ସ୍ୱପ୍ନେଶ୍ୱରଙ୍କୁ ପ୍ରେସ୍‌ଟା ମିଳିଥିଲା । ପ୍ରେସ୍‌ର ସମସ୍ତ ଉପକରଣ ତିନିଟା ପଟୁଆରେ ମହାନଦୀର ଉଠାଣି ସ୍ରୋତରେ ୧୫ ଦିନରେ ସମ୍ବଲପୁରରେ ପହଞ୍ଚି ପାରିଥିଲା । ଅତି କଷ୍ଟରେ ସ୍ୱପ୍ନେଶ୍ୱର ସମ୍ବଲପୁରରେ ଗୋଟାଏ ଜୀର୍ଣ୍ଣଘର ୧୦ ବର୍ଷ ପାଇଁ ଭଡ଼ାରେ ନେଇ ପ୍ରେସ୍‌କୁ ମରାମତି ପୂର୍ବକ ପ୍ରେସ୍‌ର ନାମ 'ସାଧନା ପ୍ରେସ୍' ରଖିବା ପାଇଁ ଭକ୍ତକବି ମଧୁସୂଦନ ରାଓଙ୍କ ଜୋଇଁ ବାବୁ ବିଜୟ ଚନ୍ଦ୍ର ମଜୁମ୍‌ଦାର ସ୍ୱପ୍ନେଶ୍ୱରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ବିଜୟ ଚନ୍ଦ୍ର ମଜୁମଦାରଙ୍କ ଘର ସୁଦୂର ବଙ୍ଗଳାରେ । ବି.ଏ ପାସ୍ କଲାପରେ ସେ ଓଡ଼ିଶା ଆସନ୍ତି । ପ୍ରଥମେ ବାମଣ୍ଡା ଯୁବରାଜ ସଚ୍ଚିଦାନନ୍ଦ ତ୍ରିଭୁବନଦେବ ଓ ତପ୍ରେ ସୋନପୁର ଯୁବରାଜ ବୀରମିତ୍ରୋଦୟ ସିଂହଦେବଙ୍କର ଗୃହଶିକ୍ଷକ ହୋଇଥିଲେ । ସୋନପୁରରେ କିଛିକାଳ ରହିବା ପରେ ସେଠାରୁ ଚାଲିଆସି ସମ୍ବଲପୁର ଜିଲ୍ଲା ସ୍କୁଲରେ ହେଡ଼ମାଷ୍ଟର ରୂପେ କାର୍ଯ୍ୟକରି ନିଜର ପରିଚୟ ଦେଇଥିଲେ । ପରେ ଶିକ୍ଷକତା ଛାଡ଼ି ସମ୍ବଲପୁରରେ କିଛିଦିନ ଓକିଲାତି ମଧ୍ୟ କରିଥିଲେ । ପରେ ତାଙ୍କର ଚକ୍ଷୁଦ୍ୱୟ ନଷ୍ଟ ହୋଇଯିବାରୁ ସେ ଆଉ ଓକିଲାତି କରିପାରିଲେ ନାହିଁ । ସୋନପୁର

ମହାରାଜା ତାଙ୍କୁ ଗୁରୁ ବୋଲି ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ବିଜୟଚନ୍ଦ୍ରଙ୍କ ଆଜୀବନ ପରିପୋଷଣର ଭାର ବହନ କରିଥିଲେ । ସ୍ୱପ୍ନେଶ୍ୱର ସମ୍ବଲପୁରରେ 'ସାଧନ ପ୍ରେସ୍' ପ୍ରତିଷ୍ଠା କରି 'ସାଧନା' ନାମରେ ଖଣ୍ଡିଏ ପତ୍ରିକା ଅଳ୍ପକାଳ ପାଇଁ ପ୍ରକାଶ କରିଛନ୍ତି । ପ୍ରେସ୍‌ଟି ମଝିରେ ମଝିରେ ସ୍ଥାନାନ୍ତରିତ ହୋଇଛି । ଯଥା:

୧. ୧୯୨୧ ରୁ ୧୯୨୯ : ସାଧନାପ୍ରେସ୍, ସମ୍ବଲପୁର

୨. ୧୯୨୯ ରୁ ୧୯୩୭ : ସାଧନା ପ୍ରେସ୍, ବରଗଡ଼

୩. ୧୯୩୭ ରୁ କିଛିବର୍ଷ : ସାଧନାପ୍ରେସ୍, ସମ୍ବଲପୁର

'ସାଧନା' ପ୍ରେସ୍‌ରେ ଯେଉଁ ପୁସ୍ତକ ଗୁଡ଼ିକ ମୁଦ୍ରିତ ହୋଇଥିଲା, ତନ୍ମଧ୍ୟରୁ କେତୋଟି ପୁସ୍ତକର ତାଲିକା ଏଠାରେ ଦିଆଗଲା :

(୧) ସମ୍ବଲମନସା–୧୯୨୩ : ସାଧନା ପ୍ରେସ୍, ସମ୍ବଲପୁର

(୨) ହରିପ୍ରିୟା– ୧୯୨୩ : ସାଧନା ପ୍ରେସ୍, ସମ୍ବଲପୁର

(୩) କୃତଜ୍ଞତା ପୁଷ୍ପାଞ୍ଜଳି – ୧୯୨୪ : ସାଧନାପ୍ରେସ୍, ସମ୍ବଲପୁର

(୪) ଉଦାହରଣ ଶ୍ଳୋକ ମଂଜରୀ–୧୯୨୪ : ସାଧନାପ୍ରେସ୍, ସମ୍ବଲପୁର

(୫)ଆଶୀର୍ବାଦ ମାଳା–୧୯୨୫ : ସାଧନା ପ୍ରେସ୍, ସମ୍ବଲପୁର

(୬) ଅନ୍ତ୍ୟେଷ୍ଟିଯାଗ – ୧୯୩୭ : ସାଧନା ପ୍ରେସ୍, ବରଗଡ଼

(୭) ଦୁଃଖିନୀ ଜଣାଣ–୧୯୪୦ : ସାଧନା ପ୍ରେସ୍, ବରଗଡ଼ (ଲେଖିକା ସ୍ୱର୍ଗତା ସତ୍ୟବତୀ ପତି)

(୮) ପ୍ରଭୁଭକ୍ତି–୧୯୪୨ (?) : ସାଧନା ପ୍ରେସ୍, ବରଗଡ଼ (ଲେଖକ ସ୍ୱର୍ଗତ କବି ଖଗେଶ୍ୱର ଶେଠ)

କିଛିକାଳ ସ୍ୱପ୍ନେଶ୍ୱର ଦାଶ ସୋନପୁର ରାଜ ଦରବାରରେ ରାଜକବି ଭାବରେ ମଧ୍ୟ ନିଜର ପାଣ୍ଡିତ୍ୟ ଓ ପ୍ରତିଭାର ପରିଚୟ ଦେଇଥିଲେ । ମହାରାଜା ଶ୍ରୀ ବୀର ମିତ୍ରୋଦୟ ସିଂହଦେବଙ୍କ ଆର୍ଥିକ ସହାୟତାରେ କବିଭୂଷଣ ସ୍ୱପ୍ନେଶ୍ୱରଙ୍କ ତିନିଖଣ୍ଡ ପୁସ୍ତକ ପ୍ରକାଶିତ ହୋଇ ଲୋକପ୍ରିୟ ହୋଇଥିଲା । ସୋନପୁର ଦରବାର ସୌଜନ୍ୟରୁ ପ୍ରକାଶିତ ହୋଇଥିବା ତିନିଖଣ୍ଡ ପୁସ୍ତକ ହେଉଛି :

(୧) ସମ୍ବଲମନସା–ପ୍ରଥମ ସଂସ୍କରଣ ୧୯୨୩ : ସାଧନାପ୍ରେସ୍, ସମ୍ବଲପୁର, ମୂଲ୍ୟ–ଦୁଇଅଣା ମାତ୍ର

(୨) କୃତଜ୍ଞତା ପୁଷ୍ପାଞ୍ଜଳି –ପ୍ରଥମ ସଂସ୍କରଣ ୧୯୨୪ : ସାଧନାପ୍ରେସ୍, ସମ୍ବଲପୁର

(୩) ଅନ୍ତ୍ୟେଷ୍ଟିଯୋଗ– ପ୍ରଥମ ସଂସ୍କରଣ ୧୯୩୭ : ସାଧନା ପ୍ରେସ୍, ବରଗଡ଼

କବି ସ୍ୱପ୍ନେଶ୍ୱରଙ୍କ "ସମ୍ବଲ-ମନସା" କାବ୍ୟରେ ସମ୍ବଲପୁର ଜିଲ୍ଲାର ଐତିହାସିକ ଓ ଭୌଗୋଳିକ ବିବରଣ ରହିଛି । "କୃତଜ୍ଞତା ପୁଷ୍ପାଞ୍ଜଳି" ପୁସ୍ତକରେ ମହାରାଜା ବୀରମିତ୍ରୋଦୟ ସିଂହଦେବଙ୍କ ଗୁଣ କୀର୍ତ୍ତନ ବିଷୟ ବର୍ଣ୍ଣିତ ଥିବାବେଳେ "ଅନ୍ତ୍ୟେଷ୍ଟିଯାଗ" ପୁସ୍ତକରେ ବୀର ମିତ୍ରୋଦୟଙ୍କ ଉଚ୍ଚ ବ୍ୟକ୍ତିତ୍ୱ ଓ ମହାନତା ସଂପର୍କରେ ବର୍ଣ୍ଣିତ ହୋଇଛି । "କୃତଜ୍ଞତା ପୁଷ୍ପାଞ୍ଜଳି" ଖଣ୍ଡକାବ୍ୟରେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଲେଖିଛନ୍ତି :

*"ହେ ରାଜର୍ଷି ନୃପକୁଳ ମଉଳୀମଣ୍ଡନ !*
*ସ୍ୱର୍ଣ୍ଣପୁର ପୁରନ୍ଦର ସର୍ବ ଗୁଣାକର,*
*ନାନା ଶାସ୍ତ୍ର ଧୂରନ୍ଧର ଧର୍ମନିଷ୍ଠ ବୀର,*
*ଦେବବ୍ରତ ନାରାୟଣ ବିପନ୍ନ–ଶରଣ,*
*ଗୁଣଗ୍ରାହୀ ଦାନବୀର କୃପା ପାରାବାର,*
*ମହାରାଜ, ଧର୍ମନିଧି ଜ୍ଞାନ ଗୁଣାକର ।"*

(କୃତଜ୍ଞତା ପୁଷ୍ପାଞ୍ଜଳି–ପୃଷ୍ଠା–୧)

କବିଭୂଷଣ ସ୍ୱପ୍ନେଶ୍ୱରଙ୍କୁ ସ୍ୱର୍ଣ୍ଣପୁର ମହାରାଜା ବହୁ ଭାବରେ–ବହୁ ସମୟରେ ସାହାଯ୍ୟ କରିଛନ୍ତି । ବେଳେବେଳେ ଆର୍ଥିକ ସାହାଯ୍ୟ ବି ପାଇଛନ୍ତି । କବି ଓ ରାଜାଙ୍କ ମଧ୍ୟରେ ସଂପର୍କ ନିକଟରୁ ନିକଟତର ହୋଇଛି । ଏପରି ନିବିଡ଼ ଓ ଅତୁଟ ସଂପର୍କ ରହି ଆସୁଥିବା ବେଳେ ଦିନେ ହଠାତ୍ ମହାରାଜା ବୀର ମିତ୍ରୋଦୟ ସିଂହଦେବଙ୍କ ପରଲୋକ ହୋଇଯାଇଛି । ସେଦିନ ଥିଲା ତା ୨୯.୪.୧୯୩୭ ମସିହା । ମହାରାଜାଙ୍କ କରୁଣ ମହାପ୍ରୟାଣରେ ଗଭୀର ଦୁଃଖିତ ଓ ମର୍ମାହତ ହୋଇ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ମହାଶୟ ଲେଖିଥିଲେ :

*"ଯେଉଁମାନେ ମହାରାଜାଙ୍କ ଜୀବନର ଶେଷ ମୁହୂର୍ତ୍ତ ଦେଖିପାରିଛନ୍ତି, ସେମାନେ ଏକ ବାକ୍ୟରେ କହୁଅଛନ୍ତି ଯେ, ବିନା ଯନ୍ତ୍ରଣାରେ ତାଙ୍କର ପ୍ରାଣବାୟୁ ପ୍ରପଞ୍ଚ ଦେଇ ଛାଡ଼ି ଚାଲିଗଲା । ଗତ ଅପ୍ରେଲ ତା ୨୯ରିଖର ରାତ୍ରୀ ୧୧ଟା ପର୍ଯ୍ୟନ୍ତ ସେ ସୁସ୍ଥ ଶରୀରରେ ରାଜକାର୍ଯ୍ୟ ସମ୍ପାଦନ କରିଥିଲେ । ବିଶ୍ରାମ କରିବା ସମୟରେ ନିଷ୍ଠୁର ନିୟତି ଅକସ୍ମାତ୍–ହାବୋଡ଼ିଗଲା । ଶ୍ୱାସବାୟୁ ଉର୍ଦ୍ଧ୍ୱଗ ହେବାଜାଣି ସେ ଶ୍ରୀମାନ୍ ମହାରାଜା କୁମାର (ବର୍ତ୍ତମାନ ମହାରାଜା)ଙ୍କୁ ଡକାଇ ଅକୁଣ୍ଠିତ ଚିତ୍ତରେ ତାଙ୍କ ହସ୍ତରେ ରାଜ୍ୟ ସମର୍ପଣ କରି ସ୍ୱୀୟ ଧର୍ମପ୍ରାଣା ରାଜପଟ୍ଟ*

*ମହିଷୀଙ୍କର ଜାନୁଦେଶରେ ମସ୍ତକ ସ୍ଥାପନ ପୂର୍ବକ କଥାବାର୍ତ୍ତା କରୁଁ କରୁଁ "ଭଗବାନ ଭଗବାନ୍", "ନାରାୟଣ ନାରାୟଣ" କହି କହି ଚିରକାଳ ସକାଶେ ଚକ୍ଷୁ ମୁଦ୍ରିତ କରିଦେଲେ । ଆଶ୍ଚର୍ଯ୍ୟର ବିଷୟ ଏହି ଯେ ତାଙ୍କର ମୃତଦେହର ମୁଖରେ କୌଣସି ବିଷାଦର ଚିହ୍ନ ରେଖା ଯାଇନାହିଁ । ଏପରି ସୁଖକର ମୃତ୍ୟୁ ମିଳିବା ପାଇଁ ଋଷିମାନେ ଆଜୀବନ କଠୋର ତପସ୍ୟା କରିଥାନ୍ତି । ରାତ୍ରୀ ଠିକ୍ ୧୨ଟାରେ ସେହି ପୁଣ୍ୟାତ୍ମାଙ୍କର ଜୀବନ ପ୍ରଦୀପ ସହସା ନିର୍ବାପିତ ହେଲା । ମୃତ୍ୟୁ ସମୟକୁ ମହାରାଜଙ୍କ ବୟସ ୬୪ ବର୍ଷ ହୋଇଥିଲା ।"*

(ଅନ୍ତ୍ୟେଷ୍ଟିଯାଗ–ପୃଷ୍ଠା ୩/୪)

## 'କବିଭୂଷଣ' ଉପାଧି :

ଅତୀତରେ ପାଟଣାରାଜ୍ୟ ଅତ୍ୟନ୍ତ ସମୃଦ୍ଧିଶାଳୀ ହୋଇଥିଲା । ପାଟଣା ରାଜ୍ୟରେ ସାହିତ୍ୟ, ସଂସ୍କୃତି, ଐତିହାସିକତା, ଭୌଗୋଳିକତା ପ୍ରଭୃତି ଅତ୍ୟନ୍ତ ଉଚ୍ଚକୋଟୀର ଥିବା ଯୋଗୁଁ ସେ ସମଗ୍ର ଭାରତବର୍ଷରେ ପରିଚିତ ଥିଲା । ପୂର୍ବେ ଏହି ପାଟଣାରାଜ୍ୟରୁ "କୋଶଳାନନ୍ଦ" ପରି ସଂସ୍କୃତ ମହାକାବ୍ୟ କବି ଗଙ୍ଗାଧର ମିଶ୍ରଙ୍କ ଲେଖନୀରୁ ସୃଷ୍ଟି ହୋଇଥିଲା । ସେତେବେଳେ ବାଳମୁକୁନ୍ଦ ବହିଦାର ପାଟଣା ରାଜ୍ୟର ଦେୱାନ୍ ଥାଆନ୍ତି । ତାଙ୍କ ପୂର୍ବରୁ ଦୁଇଜଣ ଦେୱାନ୍ ପଦରେ ଅଧିଷ୍ଠିତ ଥିଲେ । ସେମାନେ ହେଉଛନ୍ତି :

୧. ଶ୍ରୀ ମାହେଶ୍ୱର ଶାଠେ, ଦେୱାନ୍ ୧୯୦୧ ରୁ ୧୯୦୨

୨. ଶ୍ରୀ ଅଭୟ ପ୍ରସାଦ ଦାଶ, ଦେୱାନ୍ ୧୯୦୨ ରୁ ୧୯୦୮

୩. ଶ୍ରୀ ବାଳମୁକୁନ୍ଦ ବହିଦାର, ଦେୱାନ୍ ୧୯୦୮ ରୁ ୧୯୧୭ ପର୍ଯ୍ୟନ୍ତ ।

୧୯୦୮ ମସିହାରେ କବି ସ୍ୱପ୍ନେଶ୍ୱର ଦାଶ ଦଶହରା ଦରବାର ଦେଖିବା ସକାଶେ ବଲାଙ୍ଗୀର ଯାଇଥିଲେ । ପାଟଣା ମହାରାଜା ଓ ରୁଲିଙ୍ଗ ଚିଫ୍ ଶ୍ରୀ ପୃଥ୍ୱୀରାଜ ସିଂହ (ପୃଥ୍ୱୀରାଜ ଦେବ ତୃତୀୟ ୧୯୧୦–୧୯୨୪) ଦଶହରା ଦରବାରରେ ସ୍ୱପ୍ନେଶ୍ୱରଙ୍କ ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ 'କବିଭୂଷଣ' ଉପାଧି ପ୍ରଦାନ କରିଥିଲେ । ଏଠାରେ ସୂଚନାଯୋଗ୍ୟ ଯେ "କବିଭୂଷଣ" ଉପାଧି ପ୍ରାପ୍ତିର ସମସ୍ତ ଯୋଜନା ବାଳମୁକୁନ୍ଦ ବହିଦାର ହିଁ କରିଥିଲେ । ଦେୱାନ୍ ସାହେବ ଜଣେ ସଭ୍ୟ ଶିକ୍ଷିତ ବ୍ୟକ୍ତିତ୍ୱ ଥିଲେ । ତାଙ୍କ ସଂପର୍କରେ ବିଶିଷ୍ଟ ଐତିହାସିକ ଯୋଗେନ୍ଦ୍ର ସାହାଣୀ କହିଛନ୍ତି :

"...ବାଳମୁକୁନ୍ଦ ବହିଦାର ବଲାଙ୍ଗୀରକୁ ଦେୱାନ୍ ହୋଇ ଆସିଲେ । ସେ ଜଣେ କର୍ମଠ ଓ ଅଭିଜ୍ଞ ଦେୱାନ୍ ଥିଲେ । ଅବସର ବିନୋଦନ ଜରିଆରେ କର୍ମଚାରୀମାନଙ୍କୁ କାର୍ଯ୍ୟରତ କରିବାର କଳ୍ପନା କରି

କର୍ମଚାରୀମାନଙ୍କ ଦ୍ୱାରା ଅନେକ ନାଟକ ଅଭିନୟ କରାଇଥିଲେ । ସେତେବେଳ ପର୍ଯ୍ୟନ୍ତ ବଲାଙ୍ଗୀରରେ ପରଦାଲଗା ଷ୍ଟେଜ୍ ଉପରେ ନାଟକ ଅଭିନୀତ ହେଉ ନଥିଲା । ତାଙ୍କ ଅମଳରେ ସରକାରୀ ପାଣ୍ଠିରୁ ସ୍କିନ୍ ପରଦା ଆଣି ତିଆରି ହୋଇ ନାଟକମାନ ଅଭିନୀତ ହେଉଥିଲା । ଶିବାଜୀ, କୀର୍ତ୍ତିବୀର୍ଯ୍ୟ ସୁଦାମା, କଳାପାହାଡ଼ ଆଦି ଅନେକ ନାଟକ ବଙ୍ଗଳା ନାଟକବଳୀରୁ ଓଡ଼ିଆରେ ଅନୁବାଦ କରାଇ ଅଭିନୀତ କରାହେଉଥିଲା ।''

(ବିଂଶ ଶତାବ୍ଦୀର ବଲାଙ୍ଗୀର, ୨୦୦୭, ପୃଷ୍ଠା–୬୬)

ଏଠାରେ ସୂଚନାଯୋଗ୍ୟ ଯେ ''କବିଭୂଷଣ'' ଉପାଧିଟି ସ୍ୱପ୍ନେଶ୍ୱରଙ୍କ ସବୁଠାରୁ ପ୍ରିୟ ଥିଲା ଓ ପରବର୍ତ୍ତୀ କାଳରେ ସମଗ୍ର ଓଡ଼ିଶାରେ ''କବିଭୂଷଣ ସ୍ୱପ୍ନେଶ୍ୱର'' ନାମରେ ବିଶେଷ ପରିଚୟ ପାଇଥିଲେ ।

**ବାଣୀଭୂଷଣ ଉପାଧି:**

ପାଟଣା ମହାରାଜା ଶ୍ରୀ ପୃଥ୍ୱୀରାଜ ସିଂହଦେବଙ୍କ ଦରବାରରୁ 'କବିଭୂଷଣ' ଉପାଧି ଲାଭ କରିବାର ପ୍ରାୟ ଦୁଇବର୍ଷ ପରେ ବରପାଲି ରାଜା ଶ୍ରୀ ନୃପରାଜ ସିଂହଦେବ ତାଙ୍କ ପ୍ରତିଭାରେ ମୁଗ୍ଧ ହୋଇ ବରପାଲିଠାରେ ତାଙ୍କୁ 'ବାଣୀଭୂଷଣ' ଉପାଧିରେ ସମ୍ମାନିତ କରିଥିଲେ । 'ବାଣୀଭୂଷଣ' ଉପାଧି ନିର୍ବାଚନ ଓ ଉପାଧି ପତ୍ର ଲିଖନ ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ଦ୍ୱାରା ମନୋନୀତ ହୋଇ ସମ୍ପାଦିତ ହୋଇଥିଲା । ସ୍ୱପ୍ନେଶ୍ୱର ଦାଶଙ୍କୁ ପ୍ରଦାନ କରାଯାଇଥିବା ସେଇ ସାର୍ଟିଫିକେଟ୍‌ରେ ଲେଖାଥିଲା :

*''ଶ୍ରୀ ସ୍ୱପ୍ନେଶ୍ୱର ଦାଶଙ୍କ ବିରଚିତ, ପ୍ରକାଶିତ, ଅପ୍ରକାଶିତ କେତେକ ପୁସ୍ତକ ଦେଖି ଆମ୍ଭେ ଆନନ୍ଦିତ ହେଲୁଁ । ସେ ଶିକ୍ଷାବିଭାଗରେ ଉତ୍ତମ କାର୍ଯ୍ୟ କରି ଉନ୍ନତି ଲାଭ କରିଥିବାର ମଧ୍ୟ ସୁଖପ୍ରଦ ଅଟେ । ସମୟେ ସମୟେ ବକ୍ତୃତାଦିରେ ମଧ୍ୟ ସଭା ସମିତିରେ ବିଶିଷ୍ଟ ବ୍ୟକ୍ତିମାନଙ୍କର ସନ୍ତୋଷ ଉତ୍ପାଦନ କରି ସ୍ୱର୍ଣ୍ଣ ଓ ରୌପ୍ୟର ପଦକମାନ ପାଇଥିବାର ପ୍ରତ୍ୟକ୍ଷ କରି ହର୍ଷିତ ହେଲୁଁ । ଆଉ ଆମ୍ଭେ ମଧ୍ୟ ତାଙ୍କୁ 'ବାଣୀଭୂଷଣ' ଉପାଧି ଦ୍ୱାରା ସମ୍ମାନୀତ କଲୁ । ଭରସା କରୁଁ ସେ ଏଥିରେ ଉତ୍ସାହିତ ହୋଇ ସାହିତ୍ୟିକ ଉନ୍ନତି ସାଧନ କରି ସୁଯଶ ଉପାର୍ଜନ କରିବେ ।''*

ଇତି

(ସ୍ୱାକ୍ଷର)

ଶ୍ରୀଯୁକ୍ତ ରାୟ ନୃପରାଜ ସିଂହଦେବ ବାହାଦୂର

ବରପାଲି — ବରପଲ୍ଲୀ,ଅଧୀଶ୍ୱର

୧୫.୧୦.୧୯୧୦ ଇ :

## କାବ୍ୟବିନୋଦ ଉପାଧି :

୧୯୧୧ ମସିହାରେ ଦଶହରା ଅବକାଶରେ କବି ସ୍ୱପ୍ନେଶ୍ୱର ଦାଶ ରାୟଗଡ଼ ରାଜାଙ୍କ ଅନୁରୋଧକ୍ରମେ ତାଙ୍କର ରାଜଧାନୀକୁ ନିମନ୍ତ୍ରିତ ହୋଇଯାଇଥିଲେ । ସେଠାକାର ରାଜପ୍ରାସାଦରେ କବିଙ୍କୁ ସସମ୍ମାନେ ଦିନେ ଦୁଇଦିନ ରଖିବାର ବ୍ୟବସ୍ଥା କରାହୋଇଥିଲା । ପୂର୍ବରୁ ରାଜାଙ୍କ ସହିତ କବିଙ୍କ ସାଧାରଣ ପରିଚୟ ରହିଥିଲା । ''ତୁଳସୀ ରାମାୟଣ'' ରେ ଓଡ଼ିଆ ପଦ୍ୟାନୁବାଦ କରିଥିବାର କଥା ଜାଣିପାରି ରାଜା ମହୋଦୟ ଅତ୍ୟନ୍ତ ମୁଗ୍ଧ ଓ ପ୍ରୀତ ହୋଇ ମୁକ୍ତକଣ୍ଠରେ ସ୍ୱପ୍ନେଶ୍ୱରଙ୍କୁ ସମ୍ମାନପତ୍ର ସହିତ ''କାବ୍ୟବିନୋଦ'' ଉପାଧିରେ ଭୂଷିତ କରିଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟ ଉପରେ କବି ଭୂଷଣଙ୍କ ପାଣ୍ଡିତ୍ୟ ଓ ପ୍ରତିଭାର ପରିଚୟ ପାଇ ରାଜା ମହୋଦୟ ଗଦ୍‌ଗଦ୍ କଣ୍ଠରେ ତାଙ୍କୁ ''କାବ୍ୟ ବିନୋଦ କବି ସ୍ୱପ୍ନେଶ୍ୱର ଦାଶ'' ବୋଲି କହିଥିଲେ । କବି ସ୍ୱପ୍ନେଶ୍ୱର ଦାଶଙ୍କ 'କାବ୍ୟ ବିନୋଦ' ଉପାଧି ପ୍ରାପ୍ତିର ଶୁଭ ସମ୍ବାଦକୁ ସ୍ୱାଗତ ଜଣାଇ 'ସମ୍ବଲପୁର ହିତୈଷିଣୀ' ୨୩/୭ ଘୋଷଣା କରି କହିଛି :

''ଅତ୍ରତ୍ୟ ମି.ଇ ସ୍କୁଲ:ହେ:ପଣ୍ଡିତ ଶ୍ରୀ ସ୍ୱପ୍ନେଶ୍ୱର ଦାଶ ମହୋଦୟ ଦୁର୍ଗାପୂଜା ଅବକାଶରେ ରାୟଗଡ଼ ରାଜଧାନୀକୁ ଗମନ ପୂର୍ବକ ତତ୍ରତ୍ୟ ଶ୍ରୀଯୁକ୍ତ ରାଜା ମହୋଦୟଙ୍କ କର୍ତ୍ତୃକ ସାର୍ଟିଫିକେଟ୍ ସହିତ ''କାବ୍ୟବିନୋଦ'' ଉପାଧି ପ୍ରାପ୍ତ ହୋଇଅଛି । ମାନ୍ୟବର ଶ୍ରୀଯୁକ୍ତ ରାଜା ମହୋଦୟ ଦାଶ ମହୋଦୟଙ୍କ କର୍ତ୍ତୃକ ଗୋସ୍ୱାମୀ ତୁଳସୀଦାସଙ୍କ କୃତ ''ତୁଳସୀ ରାମାୟଣ''କୁ ଉତ୍କଳ ପଦ୍ୟାନୁବାଦ ହୋଇଥିବା ଦେଖି ଏବଂ ଉତ୍କଳ ଭାଷାର ଅସୀମ ବିଦ୍ୱତାର ପରିଚୟ ପାଇ ପଣ୍ଡିତ ମହୋଦୟଙ୍କୁ ଉପାଧି ବିତରଣ ସଂଗେ ସଂଗେ ପାରିତୋଷିକ ମଧ୍ୟ ପ୍ରଦାନ କରିଅଛନ୍ତି ।

(ସମ୍ବଲପୁର ହିତୈଷିଣୀ, ୨୩/୭: ତା ୨.୧୨.୧୯୧୧ ଶନିବାର)

### ଜମିଦାରଙ୍କଠାରୁ କୁଣ୍ଡଳ ପ୍ରାପ୍ତି:

କବିଭୂଷଣ ସ୍ୱପ୍ନେଶ୍ୱର ବିଭିନ୍ନ ସମୟରେ ନିଜର ସାହିତ୍ୟକୃତିମାନ ପ୍ରଦର୍ଶନ କରି ରାଜଦରବାର, ରାଜପ୍ରାସାଦରୁ ତଥା ବିଭିନ୍ନ ମହାରାଜାଙ୍କଠାରୁ ବିଭିନ୍ନ ଉପାଧିମାନ ପାଇଛନ୍ତି । ଫଳରେ ତାଙ୍କର ସାରସ୍ୱତ ପ୍ରତିଭା କ୍ରମେ ବହୁମୁଖୀ ପ୍ରତିଭାରେ ପରିଣତ ହେବାକୁ ଲାଗିଛି । ସେ ଜଣେ ସାରସ୍ୱତ ଆମୋଦପ୍ରିୟ ବ୍ୟକ୍ତି ଥିବାରୁ ପଶ୍ଚିମ ଓଡ଼ିଶାର ବିଭିନ୍ନ ବ୍ୟକ୍ତି ଏବଂ ଅନୁଷ୍ଠାନ ସହିତ ମିଶିପାରୁଥିଲେ, ନିଜକୁ ମିଶାଇ ଦେଇପାରୁଥିଲେ । ସେଥିପାଇଁ ତାଙ୍କର ଉଚ୍ଚ ସାରସ୍ୱତ ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ କବି, କବିଭୂଷଣ, କାବ୍ୟବିନୋଦ, କାବ୍ୟକଳକଣ୍ଠ ପ୍ରଭୃତି ବିଭିନ୍ନ ପଦବୀରେ ଭୂଷିତ କରାଯାଇଛି । କୁଲାବିରା

ଜମିଦାର ଚିନ୍ତାମଣି ସିଂହଙ୍କଠାରୁ କବି ଉପାଧି ଓ ଦୁଇଟି କୁଣ୍ଡଳ ପ୍ରାପ୍ତ ହୋଇଥିଲେ । ଏ ସଂପର୍କରେ ''ସମ୍ବଲପୁର ହିତୈଷିଣୀ'' ଘୋଷଣା କରି କହିଛି:

> ''ମି:ଭ: ସ୍କୁଲର ହେଡ୍ ପଣ୍ଡିତ ଶ୍ରୀ ସ୍ୱପ୍ନେଶ୍ୱର ଦାଶ ମହାଶୟ କୁଲାବିରା ଯୁବରାଜଙ୍କର ନାମକରଣକୁ ନିମନ୍ତ୍ରିତ ହୋଇ ଯାଇଥିଲେ । ମାନ୍ୟବର ଗୁଣଗ୍ରାହୀ ଜମିଦାର ସାହେବ ପଣ୍ଡିତ ମହାଶୟଙ୍କୁ ଯଥୋଚିତ ବିଦାକି ସହ ୧ ଯୋଡ଼ା କୁଣ୍ଡଳ ପ୍ରଦାନ କରିଅଛନ୍ତି ।''

(ସମ୍ବଲପୁର ହିତୈଷିଣୀ: ୨୪/୩୦ : ତା ୨୪.୫.୧୯୧୩)

## ଚାକିରି ଜୀବନରେ ଉତ୍‌ଥାନ ପତନ :

କବି ସ୍ୱପ୍ନେଶ୍ୱର ଦାଶଙ୍କ ଚାକିରି ଜୀବନରେ ବହୁ ଉତ୍‌ଥାନ ପତନ ଆସିଛି, ବହୁଥର ବଦଳି ହୋଇଛନ୍ତି ପଶ୍ଚିମ ଓଡ଼ିଶାର ବିଭିନ୍ନ ବିଦ୍ୟାଳୟକୁ । ଯେପରି :

୧. ସୁଲୁସୁଲିଆ ସ୍କୁଲ–୧୮୯୩ ରୁ ୧୮୯୫
୨. କୁବେଡ଼େଗା ସ୍କୁଲ–୧୮୯୫ ରୁ ୧୮୯୮
୩. ରେମଣ୍ଡା ସ୍କୁଲ–୧୮୯୮ ରୁ ୧୯୦୧ (୧ମ ଥର)
୪. ରମ୍ଭେଲା ସ୍କୁଲ– ୧୯୦୧ ରୁ ୧୯୦୮ (୨ୟ ଥର)
୫. ବରଗଡ଼ ଗୁରୁ ଟ୍ରେନିଂ ସ୍କୁଲ–୧୯୦୮ ରେ ପ୍ରାୟ ଏକ ସପ୍ତାହ କାର୍ଯ୍ୟ ।
୬. ରମ୍ଭେଲା ସ୍କୁଲ–୧୯୦୮ ରୁ ୧୯୦୯ (୨ୟ ଥର)
୭.ରେମଣ୍ଡା ସ୍କୁଲ (୨ୟ ଥର)

୮. ରମ୍ଭେଲାରୁ ତା ୧୪.୧.୧୯୦୯ ରେ ରେମଣ୍ଡା ଭର୍ଣ୍ଣାକୁଲାର ସ୍କୁଲର ହେଡ୍‌ମାଷ୍ଟର ପଦରେ ଯୋଗଦାନ କରି ପୁଣି ତା ୧.୩. ୧୯୦୯ ରେ ବରଗଡ଼ ସ୍କୁଲରେ ଯୋଗଦାନ । ବରଗଡ଼ରୁ ପୁଣି ରେମଣ୍ଡା ସ୍କୁଲରେ ୧୯୦୯–୧୯୧୧ ମସିହା ଫେବୃୟାରୀ ପର୍ଯ୍ୟନ୍ତ । ୧୯୧୧ ମସିହାରେ ସ୍ୱପ୍ନେଶ୍ୱର ରେମଣ୍ଡା ସ୍କୁଲରୁ ବଦଳି ହୋଇ ଟାମ୍ପରାସରାରେ କିଛିକାଳ ପ୍ରଧାନଶିକ୍ଷକ ପଦରେ ଅଧିଷ୍ଠିତ ହୋଇ କାର୍ଯ୍ୟ କରିଛନ୍ତି । ସେତେବେଳକୁ ତାଙ୍କ ସ୍ତ୍ରୀ ପଦ୍ମାବତୀ ଦେବୀ ଗର୍ଭବତୀ ଥିଲେ । ଘରୋଇ ଅସୁବିଧା ମଧ୍ୟ ମଝିରେ ମଝିରେ ଲାଗି ରହୁଥିଲା । ତେଣୁ ରେମଣ୍ଡାରୁ ଟାମ୍ପରା ସରାକୁ ପ୍ରତିଦିନ ଘୋଡ଼ାରେ ଯାଇ କାର୍ଯ୍ୟ ସମ୍ପାଦନ କରି ଘରକୁ ଫେରି ଆସୁଥିଲେ । ସମ୍ଭବତଃ ପ୍ରାୟ ତିନି ଚାରିବର୍ଷ ପରେ କବି ଚାକିରୀରୁ ଇସ୍ତଫା ଦେଇସାରିଥିଲେ । କେଉଁ କାରଣରୁ ସେ ଚାକିରିରୁ ବିତାଡ଼ିତ ହେଲେ ନା ନିଜେ ସ୍ୱତଃପ୍ରବୃତ୍ତ ହୋଇ ଇସ୍ତଫା ଦେଲେ ତାର କୌଣସି କାରଣ ଜଣାପଡ଼େ ନାହିଁ । ସେତେବେଳେ କିନ୍ତୁ 'ସମ୍ବଲପୁର ହିତୈଷିଣୀ'ର ସଂପାଦକ ଶ୍ରୀ ଦୀନବନ୍ଧୁ ଗଡ଼ନାୟକ ଦୁଃଖ ପ୍ରକାଶ କରି ଲେଖିଥିଲେ :

*"ଆମ୍ଭେମାନେ ଶୁଣି ନିତାନ୍ତ ଦୁଃଖିତ ହେଲୁଁ ଯେ ବାବୁ ସ୍ୱପ୍ନେଶ୍ୱର ଦାଶ ହେ.ମା.ମି.ଭ. ସ୍କୁଲ ରେମଣ୍ଡା, କୌଣସି କାରଣରୁ ସ୍ୱକାର୍ଯ୍ୟ ତ୍ୟାଗ କରିଅଛନ୍ତି । ଏଥିର କାରଣ କ'ଣ ବୁଝାଯାଉନାହିଁ । ସ୍ୱପ୍ନେଶ୍ୱର ବାବୁ ଏହି ଜିଲ୍ଲାରେ ଜଣେ ଆଦର୍ଶ ଶିକ୍ଷକ ଅଟନ୍ତି । ବିନା କାରଣରେ ତାଙ୍କର ଏପରି ବିପଦ ଶୁଣି ଦୁଃଖିତ ହେଲୁ ।"*

(ସମ୍ବଲପୁର ହିତୈଷିଣୀ: ୨୬/୩୩ : ତା ୫.୬.୧୯୧୫)

**ସାରସ୍ୱତ ସଂପର୍କ :**

ରାଜା, ମହାରାଜାଙ୍କଠାରୁ ଆରମ୍ଭ କରି ଉତ୍କଳର ଅନେକ ଲବ୍ଧ ପ୍ରତିଷ୍ଠ ଲେଖକମାନଙ୍କ ସହିତ କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କ ସାରସ୍ୱତ ସଂପର୍କ ସ୍ଥାପିତ ହୋଇଥିଲା । ସେମାନଙ୍କ ମଧ୍ୟରେ ଅଛନ୍ତି କବିବର ରାଧାନାଥ ରାୟ, ବ୍ୟାସକବି ଫକୀରମୋହନ ସେନାପତି, ଭକ୍ତକବି ମଧୁସୂଦନ ରାଓ, ସ୍ୱଭାବ କବି ଗଙ୍ଗାଧର ମେହେର, ପଲ୍ଲୀକବି ନନ୍ଦକିଶୋର ବଳ, କବିଶେଖର ଚିନ୍ତାମଣି ମହାନ୍ତି, ଉତ୍କଳଗୌରବ ମଧୁସୂଦନ ଦାସ, ହିନ୍ଦୀକବି ଲୋଚନ ପ୍ରସାଦ ପାଣ୍ଡେ, ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଠାରୁ ଆରମ୍ଭ କରି କବି ଦୟାନିଧି ମିଶ୍ର, କବି ବ୍ରଜମୋହନ ପଣ୍ଡା, ପଦ୍ମଶ୍ରୀ ଡାକ୍ତର ଲକ୍ଷ୍ମୀନାରାୟଣ ସାହୁ, ସାହିତ୍ୟିକ ଗୋପାଳ ଚନ୍ଦ୍ର ପ୍ରହରାଜ, ଡାକ୍ତର ଜନାର୍ଦ୍ଦନ ପୂଜାରୀ ଏବଂ ବିଂଶ ଶତାବ୍ଦୀର ଐତିହାସିକ ଘନଶ୍ୟାମ ଦାଶ, ଐତିହାସିକ ଶିବପ୍ରସାଦ ଦାଶ ପ୍ରମୁଖ । କବିବର ରାଧାନାଥଙ୍କ ସହିତ କବି ସ୍ୱପ୍ନେଶ୍ୱର ଦାଶଙ୍କ ଉତ୍ତମ ସାରସ୍ୱତ ସଂପର୍କ ଥିଲା । କବିବର ରାଧାନାଥ, କବି ସ୍ୱପ୍ନେଶ୍ୱରଙ୍କୁ କିଭଳି ଦୃଷ୍ଟିରେ ନିରୀକ୍ଷଣ କରୁଥିଲେ, କିଭଳି ଉପଦେଶମାନ ଦେଉଥିଲେ, ତାହା ତାଙ୍କ ଲିଖିତ କେତୋଟି ସାହିତ୍ୟିକ ପତ୍ରାବଳୀରୁ ଜଣାପଡ଼େ ।

କବିବର ରାଧାନାଥ ରାୟଙ୍କ ପତ୍ର

(୧)

ଶ୍ରୀହରି : ଶରଣମ୍ ହୁଗୁଳୀ

୩.୧. ୧୯୦୩

ପ୍ରଣତିପୂର୍ବକ ନିବେଦନ ମିଦଂ

*ମହାଶୟ, ଆପଣଙ୍କ ଅନୁଗ୍ରହପତ୍ର ଏବଂ "ଅଭିଷେକୋତ୍ସବ" ପୁସ୍ତିକା ପାଠରେ ପ୍ରୀତ ହେଲି । ଆପଣଙ୍କ ପୂର୍ବ ରଚନା ଅପେକ୍ଷା ଏଥିରେ ପ୍ରସାଦଗୁଣ ଅପେକ୍ଷାକୃତ ଅଧିକ ଥିବାର ବୋଧ ହେଲା ।*

*ପାର୍ସେଲ୍ ମଧ୍ୟରେ ପତ୍ର ଦେବାର ନିୟମ ବିରୁଦ୍ଧ । ଭବିଷ୍ୟତରେ ନିୟମ ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିବା ହେବେ ।*

ପ୍ରଣତ

ରାଧାନାଥ ରାୟ ।

(୨)

ଶ୍ରୀହରି : ଶରଣମ୍

ହୁଗୁଳୀ

୧୪.୧.୧୯୦୩

ପ୍ରଣତି ପୂର୍ବକ ନିବେଦନ ମିଦଂ

*ମହାଶୟ, ଆପଣଙ୍କର ଅନୁଗ୍ରହୋପହାର "ଶ୍ରୀରାମଚନ୍ଦ୍ର ଜଣାଣ" ପାଇ ଆପ୍ୟାୟିତ ହେଲି । ପୁସ୍ତକର ରଚନା ଆପଣଙ୍କର ଭାଷାଜ୍ଞାନର ସୁନ୍ଦର ପରିଚାୟକ । ଅଧ୍ୟବସାୟ ଦ୍ୱାରା ଆପଣ ଉତ୍ତରୋତ୍ତର ଉତ୍କର୍ଷ ଲାଭ କରିପାରିବେ ।*

ପ୍ରଣତ

ଶ୍ରୀ ରାଧାନାଥ ରାୟ ।

(୩)

ଶ୍ରୀହରି : ଶରଣମ୍

ହୁଗୁଳୀ

୩୦.୧.୧୯୦୩

ପ୍ରଣତି ପୂର୍ବକ ନିବେଦନ ମିଦଂ

*ମହାଶୟ, ଆପଣଙ୍କର ଅନୁଗ୍ରହୋପହାର ପୁସ୍ତିକା ପାଠରେ ପ୍ରୀତ ହେଲି । ଆପଣଙ୍କ ପୂର୍ବ ରଚନା ଅପେକ୍ଷା ଏଥିରେ ପ୍ରସାଦଗୁଣ ଅଧିକ ଥିବାର ବୋଧ ହେଲା ।*

ପ୍ରଣତ

ଶ୍ରୀ ରାଧାନାଥ ରାୟ

ଠିକ୍ ସେହିପରି ସ୍ୱପ୍ନେଶ୍ୱର ଦାଶଙ୍କ "ସମ୍ବଲପୁର ଇତିହାସ ଦର୍ପଣ" ପୁସ୍ତକ ସଂପର୍କରେ କବିବର ରାଧାନାଥ ରାୟଙ୍କ ମନ୍ତବ୍ୟ ଅଛି । ଏହି ପୁସ୍ତକର "ଐତିହାସିକ ସ୍ୱପ୍ନେଶ୍ୱର ଦାଶ" ପ୍ରବନ୍ଧରେ ସେହି ମନ୍ତବ୍ୟ ପାଠକ–ପାଠିକାମାନେ ଦେଖିବାକୁ ପାଇବେ ।

କବିଙ୍କ ପାଖକୁ ଯେଉଁ ପତ୍ରଗୁଡ଼ିକ ଆସୁଥିଲା, କବି ସେସବୁକୁ ସାଇତି ରଖିପାରି ନଥିଲେ । ଫଳରେ ଅଧିକାଂଶ ମୂଲ୍ୟବାନ ପତ୍ରାବଳୀ ନଷ୍ଟ ହୋଇଯାଇଛି । ଏଠାରେ ଅଳ୍ପ କେତୋଟି ପତ୍ରାବଳୀର ସାହାଯ୍ୟ ନିଆଯାଇଛି ।

ପ୍ରସିଦ୍ଧ ହିନ୍ଦୀ କବି ଲୋଚନ ପ୍ରସାଦ ପାଣ୍ଡେଙ୍କ ପ୍ରତି ଗଭୀର ଶ୍ରଦ୍ଧାନିବେଦନ କରି କବି ସ୍ୱପ୍ନେଶ୍ୱର ତାଙ୍କର "ଲୋଚନ ପ୍ରସାଦ ପାଣ୍ଡେୟଙ୍କ ପ୍ରତି" କବିତାରେ ଲେଖିଥିଲେ :

"କିଏ ଦେଲା ତବନାମ ଲୋଚନପ୍ରସାଦ,
ମୋ' ମତରେ ନୋହିଲାତ ତବଗୁଣ ଭଳି ।
ବାସ୍ତବିକ କିନ୍ତୁ ତୁମ୍ଭେ ହୃଦୟ ପ୍ରସାଦ,
ପ୍ରସାଦରତ୍ନ ତୁମ୍ଭର ହୃଦୁଁ ଦିଶେ ଝଳି ।"
(ସମ୍ବଲପୁର ହିତୈଷିଣୀ: ୨୩/୩ : ତା ୪.୧୧.୧୯୧୧)

ଜଣେ ସାହିତ୍ୟିକଙ୍କୁ, ଜଣେ ସାରସ୍ୱତ ସ୍ରଷ୍ଟାଙ୍କୁ ଆଉ ଜଣେ ସ୍ରଷ୍ଟା କିଭଳି ଚିହ୍ନିପାରେ, କିଭଳି ବୁଝିପାରେ, ତାହା ଏହି କବିତାରୁ ସହଜରେ ବୁଝାପଡ଼େ । ହିନ୍ଦୀକବି ଲୋଚନ ପ୍ରସାଦଙ୍କ ସହିତ ତାଙ୍କର ଭାବ କେତେ ନିବିଡ଼, କେତେ ନିକଟତର ତାହା ଅନୁଧ୍ୟାନ କରିବାର କଥା । ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ତିରୋଧାନ ଓ "ଉତ୍କଳ ମଧୁପ" ପତ୍ରିକା ସଂପର୍କରେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଲେଖିଥିଲେ :

*"ପଣ୍ଡିତ ବିଦ୍ୟାରତ୍ନ ମହାଶୟଙ୍କ ବିୟୋଗ ସଂଗେ ସଂଗେ ମଧୁପର ତିରୋଧାନ ସୁନିଶ୍ଚିତ ବୋଲି ସମସ୍ତେ ଭାବନା କରିଥିଲେ । ଦେଖି ଆଶାନ୍ୱିତ ହୋଇଅଛୁଁ ଯେ 'ଉତ୍କଳ ମଧୁପ' ପୁନଃ ପ୍ରକାଶିତ ହୋଇଅଛି । ଉତ୍କଳର ଲବ୍‌ଧପ୍ରତିଷ୍ଠ ସୁଲେଖକ ଓ ସୁବକ୍ତା ପଣ୍ଡିତ ଶ୍ରୀ ବିଶ୍ୱନାଥ କର ମହାଶୟ ଅବୈତନିକ ଭାବେ ମଧୁପର ସଂପାଦକତ୍ୱ ଗ୍ରହଣ କରିଅଛନ୍ତି । x x x ବିଦ୍ୟାରତ୍ନ ମହାଶୟ ମଧ୍ୟ ମଧୁପ ପାଞ୍ଚବର୍ଷ ଚଳିବା ଭଳି ପ୍ରବନ୍ଧ ସଞ୍ଚୟ କରିଯାଇଛନ୍ତି । ଏପରି ଅବସ୍ଥାରେ ମଧୁପ ପ୍ରକାଶରେ କୌଣସି ଅସୁବିଧା ନାହିଁ ।"*
(ସାଧନା : ୩/୨୧ : ତା ୧୧.୯–୧୯୨୪, ପୃଷ୍ଠା–୨୬)

ସମ୍ବଲପୁରର ଅନ୍ୟତମ ବିଶିଷ୍ଟ ସାହିତ୍ୟିକ ଡଃ ଶ୍ରଦ୍ଧାକର ସୁପକାରଙ୍କ ସହିତ ତାଙ୍କର ଉତ୍ତମ ସାରସ୍ୱତ ସଂପର୍କ ରହିଥିଲା । ସୂପକାର ମହାଶୟ ନିଜ ହୃଦୟର ଭାବକୁ ବ୍ୟକ୍ତ କରି କବିଭୂଷଣଙ୍କୁ ଖଣ୍ଡେ ଚିଠିରେ ଲେଖିଥିଲେ :

ସମ୍ବଲପୁର
୨୭.୩.୧୯୫୬

ପୂଜନୀୟ ମହାଶୟ,

*ଆପଣଙ୍କର କୃପାପତ୍ର ପାଇଲି । ଆପଣଙ୍କ ଗୁଣଗ୍ରାହିତା ଯୋଗୁଁ ମୋର ଗଳ୍ପ ସଞ୍ଚୟନ ଆପଣଙ୍କଠାରୁ ଉଚ୍ଚପ୍ରଶଂସା ଲାଭ କରିଛି । ଏଥିପାଇଁ ଆପଣଙ୍କଠାରେ ମୁଁ କୃତଜ୍ଞ । ପ୍ରଥମ ପୁସ୍ତକ ପ୍ରକାଶ ପରେ ଆଉ ଖଣ୍ଡିଏ ବହି ଆସନ୍ତାମାସକୁ ପ୍ରକାଶ କରିବାକୁ ଚେଷ୍ଟା କରିଛିଁ । ଏଥିରେ ସମ୍ବଲପୁରୀ ଭାଷା, ଭାବ ଓ ବାତାବରଣ ଅଧିକ ସ୍ଥାନ ପାଇବ ଓ ଆପଣଙ୍କର ମନଃପୂତ ହୋଇପାରିବ ବୋଲି ଆଶା କରେଁ । ପୁସ୍ତକର ନାମ ହୋଇଛି 'ବିଷକନ୍ୟା' । ଗୋଟିଏ ଏକାଙ୍କିକା ଓ କେତେକ ଗଳ୍ପ ନେଇ ବହିଟି ବାହାରିବ । ଏହାଛଡ଼ା ମଝିରେ ମଝିରେ ମାସିକ ପତ୍ରିକାମାନଙ୍କୁ ଲେଖା ପଠଉଛି । ସମୟ ଅଭାବରୁ ଓ ସବୁବେଳେ ନାନା ପ୍ରକାର ଦୁଶ୍ଚିନ୍ତା ଲାଗି ରହିଥିବାରୁ ଭଲ ଲେଖାଲେଖି କରିପାରୁ ନାହିଁ ।*

*ଆପଣଙ୍କଠାରୁ ଉପହାର ରୂପେ ପାଇଥିବା ପୁସ୍ତକ ଦୁଇଟି ପଢ଼ିଲି । 'ବୈଦ୍ୟ କଳ୍ପଦ୍ରୁମ' ଆମ୍ଭମାନଙ୍କ ପକ୍ଷରେ ନୀରସ ଓ ଅବ୍ୟବହାର୍ଯ୍ୟ ହେଲେ ମଧ୍ୟ ବୈଦ୍ୟମାନଙ୍କୁ ବିଶେଷ ସାହାଯ୍ୟ କରିପାରିବ ବୋଲି ଆଶା କରେଁ । ଆପଣଙ୍କ ସ୍ୱାସ୍ଥ୍ୟ ଭଲଥିବ ବୋଲି ଆଶା କରେଁ ।*

ଇତି

ଆପଣଙ୍କର ଆଶୀର୍ବାଦକାଂକ୍ଷୀ

ଶ୍ରଦ୍ଧାକର ସୁପକାର

*ପରବର୍ତ୍ତୀ କାଳରେ ଶ୍ରଦ୍ଧାକର ସୁପକାରଙ୍କ ଗଳ୍ପଗୁଡ଼ିକ ସଂପର୍କରେ ଉଚ୍ଚପ୍ରଶଂସା କରି ଓଡ଼ିଶାର ଲବ୍ଧପ୍ରତିଷ୍ଠ କବି ଓ ବିଶିଷ୍ଟ ସମାଲୋଚକ ପଦ୍ମଶ୍ରୀ ଡକ୍ଟର ମାୟାଧର ମାନସିଂହ ଲେଖିଥିଲେ :*

*''ସମ୍ବଲପୁରର ଶ୍ରୀ ଶ୍ରଦ୍ଧାକର ସୁପକାରଙ୍କ ଗଳ୍ପମାଳାରେ ସମ୍ବଲପୁର ଅଞ୍ଚଳର ସ୍ୱକୀୟ ବର୍ଣ୍ଣାଢ଼୍ୟତା ଫୁଟି ଉଠୁଥିବାରୁ ସେଗୁଡ଼ିକ ବିଶେଷ ଉପଭୋଗ୍ୟ ହୋଇଉଠିଛନ୍ତି ।''*

(ଓ.ସା.ଓ. ପଞ୍ଚମ ସଂସ୍କରଣ–୧୯୯୦, ଗ୍ରନ୍ଥମନ୍ଦିର, କଟକ–୨
ସପ୍ତଦଶ ଅଧ୍ୟାୟ, ପୃଷ୍ଠା–୩୨୩)

୧୯୫୯ ମସିହାରେ ଶ୍ରଦ୍ଧାକର ସୁପକାରଙ୍କ ଗଳ୍ପ ଓ ଏକାଙ୍କିକା ପୁସ୍ତକ ''ଜୁଆର ଭଙ୍ଗା'' ପ୍ରକାଶ ପାଇଛି । ଲେଖକ ଶ୍ରୀ ସୁପକାର ଏହାକୁ କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କୁ ଉତ୍ସର୍ଗ କରିଦେଇ ଲେଖିଥିଲେ :

## ଉତ୍ସର୍ଗପତ୍ର

*ଦାରିଦ୍ର୍ୟ ଓ ବାର୍ଦ୍ଧକ୍ୟ ଯାହାଙ୍କର ଅଶ୍ରାନ୍ତ ଲେଖନୀକୁ ସମୃଦ୍ଧ ଓ ତରୁଣ କରିପାରିଛି, ସେହି ପଣ୍ଡିତ ସ୍ୱପ୍ନେଶ୍ୱରଦାଶ କବିଭୂଷଣଙ୍କ କରକମଳରେ ଭକ୍ତିର ଉପହାର ସ୍ୱରୂପ ଏ ପୁସ୍ତକକୁ ଉତ୍ସର୍ଗ କରୁଛି ।*

ବିନୀତ
ଶ୍ରଦ୍ଧାକର
୧.୧.୫୯

ଉତ୍କଳର ଲବ୍‌ଧପ୍ରତିଷ୍ଠ ସାହିତ୍ୟିକୁ କବିବୃନ୍ଦ ସ୍ୱପ୍ନେଶ୍ୱରଙ୍କୁ କେବଳ ଉତ୍ସାହ ଦେଇ ନାହାନ୍ତି, ଅଧିକନ୍ତୁ ତାଙ୍କର ସୃଷ୍ଟି ପ୍ରତ୍ୟୟକୁ ସଜାଡ଼ିଛନ୍ତି ।

**ସ୍ୱପ୍ନେଶ୍ୱର ଦାଶଙ୍କ ସ୍ୱଭାଷାପ୍ରିୟତା :**

କବି ସ୍ୱପ୍ନେଶ୍ୱର ଥିଲେ ଓଡ଼ିଆ ଭାଷା ଓ ସାହିତ୍ୟର ଜଣେ ଜାଗ୍ରତ୍ ଓ ବିନିଦ୍ର ପ୍ରହରୀ, ଜଣେ ମୁଗ୍‌ଧ ସାରସ୍ୱତ ଭକ୍ତ ଓ ପ୍ରେମିକ । ନିଜର ଜୀବନକାଳ ମଧ୍ୟରେ ତାଙ୍କର ମାତୃଭାଷା ଓ ସାହିତ୍ୟ ପାଇଁ ସେ ଯେଉଭଳି କାମ କରିଛନ୍ତି, ତାହାର ପଟାନ୍ତର କାହିଁ ? ନିଜର ଭାଷାକୁ କିଏ ବା ଭଲ ନପାଏ ? ଭାଷା ଓ ସାହିତ୍ୟ ପାଇଁ ତାଙ୍କର ମନ ଓ ପ୍ରାଣ ସବୁବେଳେ ଉନ୍ମୁକ୍ତ ଥିଲା । ସାରସ୍ୱତ ସାଧନାକୁ ସେ ନିଜ ଜୀବନର 'ପରମବ୍ରତ'ଭାବେ ଆଜୀବନ ପାଳନ କରିଆସିଛନ୍ତି । ଭାଷା ଓ ଓ ସାହିତ୍ୟର ନାଁ ଶୁଣିଲେ ସତରେ ତାଙ୍କ ଆଖିରେ ବିଜୁଳୀ ଖେଳିଯାଉଥିଲା । 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ତାଙ୍କର ''ମୋ' ଭାଷା'' ଶୀର୍ଷକ କବିତା ଏହାର ବଳିଷ୍ଠ ପ୍ରମାଣ । କବିଙ୍କ ଭାଷାରେ :

*''ମନେ ନାହିଁ ଯେବେ ଥିଲି, ଜନନୀ ଗରଭେ,*
*କି ଭାଷାରେ ଡାକୁଥିଲି ବ୍ରହ୍ମାଣ୍ଡ ଈଶ୍ୱରେ;*
*କି ଦିବ୍ୟ ଭାଷାରେ ମୋତେ ସର୍ବଶକ୍ତିମାନ–*
*ବୋଧୁଥିଲେ, ଶୁଣିଯାହା ସେ ଆତ୍ମା ଶାନ୍ତିତ୍ୱ–*
*ହେଉଥିଲା । କେ କହିବ ? ସେ କାଳରହସ୍ୟ ।*

x x x x

*ମୋ ଗାଆଁର ଜଳ–ବାୟୁ–ମାଟି ସଂଗ–ଗୁଣେ,*
*ସେ ଭାଷା ଲତିକା ହେଲା ପୁଷ୍ପିତ ଫଳିତା ।*
*ଶ୍ରମ–ସାର–ଶିକ୍ଷା–ବଳେ ତହୁଁ କେତେ ଫଳ,*
*ପରିପୁଷ୍ଟ କରି କଲି, ଆଦାନ ପ୍ରଦାନ,*
*ପ୍ରତିବାସୀ ଗ୍ରାମବାସୀ ଜନଙ୍କ ମଧ୍ୟରେ ।*
*ପଚାରି ପାରିଲି ଯେତେ କୃତ୍ରିମ ଉପାୟେ,*
*ବାହ୍ୟ–ସୌନ୍ଦର୍ଯ୍ୟ–ଯୁକତ କ୍ଷଣ ତୃପ୍ତିକର,*
*ସ୍ୱଦେଶୀ ବିଦେଶୀ ସଂଗେ କଲି ବିନିମୟେ ।*
*ଯେ ଯାହା କହୁ ପଛେ ଛାଡ଼ି ନପାରେ ମୋ ଭାଷା ।"*

(ସମ୍ବଲପୁର ହିତୈଷିଣୀ: ୨୫/୧୮ : ତା ୨୧.୨–୧୯୧୪

ଉପରୋକ୍ତ ପଦମାନଙ୍କରେ ମାତୃଭାଷା ଓ ସାହିତ୍ୟପ୍ରତି କବି ସ୍ୱପ୍ନେଶ୍ୱର ଗଭୀର ସମ୍ମାନ, ଆଦର ଥିବାର ପରିଲକ୍ଷିତ ହୁଏ ।

## କବିଙ୍କ ପରିବାର :

କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କ ଧର୍ମପତ୍ନୀ ନାରୀକବି ଶ୍ରୀମତୀ ପଦ୍ମାବତୀ ଦେବୀ ମଧ୍ୟ ତଦ୍ରୂପ ଜଣେ ବିଦୂଷୀ ମହିଳା ଥିଲେ । ସେ ଏକାଧାରରେ ଲେଖିକା, କଣ୍ଢିଶିଳ୍ପୀ, ଗଣିତ ଓ ଜ୍ୟୋତିଷ ଶାସ୍ତ୍ରରେ ପାରଙ୍ଗମ ଥିଲେ । ତାଙ୍କର ମଧ୍ୟ ସାମାନ୍ୟ ରଚନାଶକ୍ତି ଥିଲା । ସେ କେବଳ କବିଭୂଷଣଙ୍କ ସହଧର୍ମିଣୀ ନଥିଲେ, ସହକର୍ମିଣୀ ଭାବରେ ମଧ୍ୟ ଯଥେଷ୍ଟ ଅବଦାନ ରହିଥିଲା । କବିଭୂଷଣଙ୍କ ଜୀବନ ଓ ସାହିତ୍ୟ ସାଧନା ପଥରେ ତାଙ୍କର ଅତୁଳନୀୟ ଦାନ ରହିଥିଲା । ଘରର–ଯାବତୀୟ ସାମାଜିକ କାର୍ଯ୍ୟରେ କବିପତ୍ନୀ ବ୍ୟସ୍ତ ଥିବାବେଳେ ସ୍ରଷ୍ଟା ସ୍ୱପ୍ନେଶ୍ୱର ସାଂସାରିକ ଚିନ୍ତାଶୂନ୍ୟ ହୋଇ ନିରନ୍ତର ସ୍ୱଛନ୍ଦରେ ସାହିତ୍ୟ ସାଧନା କରୁଥିଲେ । ତାଙ୍କର ସେହି ସାରସ୍ୱତ ସାଧନାର ଫଳ ମଧ୍ୟ ସଫଳ ହୋଇପାରିଥିଲା । ସ୍ୱପ୍ନେଶ୍ୱରଙ୍କ ପତ୍ନୀ ଶ୍ରୀମତୀ ପଦ୍ମାବତୀ ଦେବୀ ଜଣେ ସୁଲେଖିକା ତ ଥିଲେ । ତା' ବ୍ୟତୀତ ସ୍ୱାମୀ ସ୍ୱପ୍ନେଶ୍ୱରଙ୍କ ସହିତ ଘରେ ନିୟମିତ ଭାବେ ଓଡ଼ିଆ ଓ ସଂସ୍କୃତ କାବ୍ୟଚର୍ଚ୍ଚା, ନିରନ୍ତର କାବ୍ୟଶାସ୍ତ୍ର ଅଧ୍ୟୟନ ସହିତ ବୈଦିକ କାର୍ଯ୍ୟରେ ମଧ୍ୟ ସାହାଯ୍ୟ କରୁଥିଲେ । ସେତେବେଳେ ପଦ୍ମାବତୀ ଦେବୀଙ୍କର କେତେକ କବିତା ପଠିତ ଓ ପ୍ରଚାରିତ ହେଉଥିଲା । ନାରୀକବି ପଦ୍ମାବତୀ ଦେବୀ "କୃଷ୍ଣ କଥାମୃତ" ନାମରେ ଖଣ୍ଡିଏ ପୁସ୍ତକ ରଚନା କରିଥିଲେ ଓ ତାହା ତତ୍କାଳୀନ ଷଢେଇକଳା ମହାରାଜା ପ୍ରକାଶ କରିଦେବା ପାଇଁ ପ୍ରତିଶୃତି ଦେଇଥିଲେ ବୋଲି ବାମଣ୍ଡାଷ୍ଟେଟ୍‌ର ଶ୍ରୀମତୀ ରାଜ ପିତାମହୀଙ୍କ (ଏହି ପୁସ୍ତକର ପରିଶିଷ୍ଟ–୧ ରେ ଥିବା ପତ୍ରାବଳୀ–୬ ରେ ଉଲ୍ଲେଖ ଅଛି ।) ସ୍ୱପ୍ନେଶ୍ୱର ଦାଶଙ୍କୁ ଲିଖିତ ଏକପତ୍ରରୁ ଜଣାପଡ଼େ । "କୃଷ୍ଣ କଥାମୃତ"

ବହିଖଣ୍ଡିକ ସେତେବେଳେ ପ୍ରକାଶିତ ହୋଇଥିଲା କି ନାହିଁ, ସେ ସଂପର୍କରେ ବର୍ତ୍ତମାନ ଜାଣିବାର କୌଣସି ଉପାୟ ନାହିଁ ।

ବରଗଡ଼ ସନ୍ନିକଟ ତାଳଶ୍ରୀଗିଡ଼ା ହେଉଛି ବରଗଡ଼ ଜିଲ୍ଲାର ଗୋଟିଏ ବିଶିଷ୍ଟ ଗ୍ରାମ । ବରଗଡ଼ର ତତ୍‌କାଳୀନ ଓକିଲ ଶ୍ରୀଯୁକ୍ତ ଋଷଭ କର, ବି.ଏ., ବି.ଏଲ୍, ମହାଶୟ ତାଳଶ୍ରୀଗିଡ଼ା ଗ୍ରାମରେ ଶ୍ରୀଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ କରିବା ପାଇଁ ପ୍ରାୟ ୬୦ ହଜାର ଟଙ୍କା ମୁକ୍ତ କଣ୍ଠରେ ଦାନ କରିଥିଲେ । ଯେଉଁଦିନ ମନ୍ଦିର ପ୍ରତିଷ୍ଠା ହୋଇଥିଲା ସେହିଦିନ ନାରୀକବି ପଦ୍ମାବତୀ ଦେବୀଙ୍କ ରଚିତ ଗୋଟିଏ ଓଡ଼ିଆ କବିତା ପ୍ରକାଶିତ ହୋଇ ପ୍ରଚାରପତ୍ର ସ୍ୱରୂପ ବିତରଣ କରାଯାଇଥିଲା । ପାଠକ ଓ ଗବେଷକମାନଙ୍କ ଜାଣିବା ସକାଶେ ସେହି କବିତାଟି ଏଠାରେ ପୂର୍ଣ୍ଣରୂପେ ଉଦ୍ଧାର କରାଗଲା:

### ଶଙ୍ଖଧ୍ୱନି

*ବାଜ ଶୁଭଶଙ୍ଖ ଆଜ ଜଗନ୍ନାଥଙ୍କର–*
*ନବ ଦେବ– ଆଳୟରେ କମ୍ପାଇ ଗଗନେ;*
*କର–ବଂଶ–କଞ୍ଜ–ହଂସ ଶ୍ରୀ ଋଷଭ କର,*
*କରିଛନ୍ତି ନିର୍ମାଣ ଯା’ ପୁଣ୍ୟେ ସୁଲଗନେ ।୧ ।*
*ଜାୟା ଯଜ୍ଞବତୀ ସହ ପ୍ରତିଷ୍ଠା କରମେ,*
*ହୋଇଛନ୍ତି ବ୍ରତୀ ପିତୃ–ସ୍ମୃତି–ସଂରକ୍ଷଣେ;*
*ଯାଙ୍କ ପୂତ ପୂଣ୍ୟଫଳେ ପବିତ୍ର ଧରମେ,*
*ସମ୍ଭବିଲା ଏତେକାଳେ ଅପୂର୍ବ ଲକ୍ଷଣେ । ୨ ।*
*ହେଉଥିବେ ପରିତୁଷ୍ଟ ସୁରଧାମେ ଆଜ,*
*କର୍ମବୀର ବାଲ୍‌କି ଦାଶ, ପୁତ୍ରକୃଷ୍ଣ ଦାଶ,*
*ପୁତ୍ର ବୃନ୍ଦାବନ ଚନ୍ଦ୍ର ସୁତ ଗଜରାଜ,*
*ତାଙ୍କ ଯୋଗ୍ୟ ସହୋଦର ମିତ୍ରଭାନୁ ଦାଶ । ୩ ।*
*ସୁକନ୍ୟା ସୁଜାମାତାଙ୍କ ସୁକାର୍ଯ୍ୟ–ଦର୍ଶନେ,*
*କରୁଥିବେ ଶୁଭାଶିଷ ସୁରଗଣ ସଙ୍ଗେ,*
*ଶ୍ରୀଶ୍ରୀଜଗନ୍ନାଥେ ସ୍ମରି ଆଜ ପରସନ୍ନେ,*
*ସୁଧର୍ମା ସଭାମଣ୍ଡପେ ପ୍ରତିଷ୍ଠା ପ୍ରସଙ୍ଗେ । ୪ ।*
*ଆହେ ଶ୍ରୀଶ୍ରୀଚକାଡୋଳା ନୀଳାଚଳବାସୀ,*
*ଭଦ୍ରା ବଳଭଦ୍ର ସହ ମନ୍ଦିରେ ବିରାଜ,*
*ଶୁଭେ ଘେନି ପୁଷ୍ପାଞ୍ଜଳି ସନ୍ତୋଷ ପ୍ରକାଶି,*
*କର ନିର୍ମାତାଙ୍କ କ୍ଷେମ ହେ ବିରାଜ–ରାଜ । ୫ ।*

କବି କୁଟୀର — ନିବେଦିକା
ବରଗଡ଼ — ନାରୀକବି
ତା ୯.୧୨.୫୩ — ଶ୍ରୀମତୀ ପଦ୍ମାବତୀ ଦେବୀ

ନାରୀକବି ପଦ୍ମାବତୀ ଦେବୀଙ୍କର ଏହି କବିତାଟି ପରେ ସ୍ୱପ୍ନେଶ୍ୱର ଦାଶଙ୍କ ଲିଖିତ "କର୍ମବୀର ବାଲ୍‌କୀ ଦାଶ" ପୁସ୍ତକର ଶେଷରେ (ପୃ.୫୦) ସନ୍ନିବିଷ୍ଟ ହୋଇ ପ୍ରକାଶିତ ହୋଇଥିଲା । 'ପ୍ରବାଦ, ପ୍ରବଚନ, ଲୋକକଥା' ଆଦିର ସଂଗ୍ରହ ଓ ସଂପାଦନା ପାଇଁ ମଧ୍ୟ କବିପତ୍ନୀ ପଦ୍ମାବତୀ ଦେବୀ ସ୍ୱାମୀ କବି ସ୍ୱପ୍ନେଶ୍ୱର ଦାଶଙ୍କୁ ବହୁ ଭାବରେ ସାହାଯ୍ୟ କରିଛନ୍ତି । ପଦ୍ମାବତୀ ଦେବୀଙ୍କର ଯୋଗଦାନ ନ ଥିଲେ ହୁଏତ "ପ୍ରବଚନ ତରଙ୍ଗ" ଭଳି ଗୋଟିଏ ବିରାଟ ପୁସ୍ତକର କଳ୍ପନା କରାଯାଇ ପାରି ନଥାନ୍ତା । ଏଥିରୁ କବିପତ୍ନୀଙ୍କ ମାତୃଭାଷା ଓ ସାହିତ୍ୟ ପ୍ରତି ଗଭୀର ଅନୁରାଗ ଥିବାର କଥା ପାଠକେ ଜାଣିପାରିବେ । କବିପତ୍ନୀଙ୍କ ଜୀବନ ଓ ପ୍ରତିଭାକୁ ଗଭୀର ଭାବେ ଅନୁଧ୍ୟାନ କଲେ ଗୋଟିଏ ଓଡ଼ିଆ କବିତା ସ୍ମରଣକୁ ଆସେ :

"ନାରୀ, ନା କହିବା ଯାହାର ଭାଷାକୋଷେ ନାହିଁ ।
ସୁଖବାଣ୍ଟିଦିଏ ଦୁଃଖ ରଖେ ନିଜ ପାଇଁ,
*ନା କହିବା ଯାହାର ଭାଷାକୋଷେ ନାହିଁ ।*
*ସେ ହସେ, କିନ୍ତୁ ଅନ୍ତରହେ ନୁହେ*
*ସେ କାନ୍ଦେ–କିନ୍ତୁ ଦୁଃଖରେ ନୁହେ*
*ସେ ଜଳେ–କିନ୍ତୁ ନିଆଁରେ ନୁହେ ।*
*ସେ ହସେ, କାନ୍ଦେ, ଜଳେ ଅନ୍ୟ ପାଇଁ*
*ନା କହିବା ଯାହାର ଭାଷାକୋଷେ ନାହି ।*
*କେବଳ ପାକଶାଳା ଓ ବିଳାସକକ୍ଷ*
*ଦୁଇଟି ମାତ୍ର କାର୍ଯ୍ୟକ୍ଷେତ୍ରେ ସୀମିତ ରହିବା ପାଇଁ ଜନ୍ମି ନାହିଁ ସେହି*
*ନା କହିବା ଯାହାର ଭାଷାକୋଷେ ନାହି ।*
*ନାରୀ ଗୃହକର୍ତ୍ତ୍ରୀ, ନାରୀ ସେବିକା*
*ଜନନୀ, ଜାୟା, ଭଗ୍ନୀ, କନ୍ୟା, ନାରୀ ଅନନ୍ୟା*
*ସେ ହୁଏ ଧନ୍ୟା, ତ୍ୟାଗ ସେଥିପାଇଁ*
*ନାରୀ, ନା କହିବା–ଯାହାର ଭାଷାକୋଷେ ନାହିଁ ।"*
(ଜଣେ ମହୀୟସି ଭଦ୍ର ମହିଳାଙ୍କଠାରୁ ସଂଗୃହୀତ)

କବିପତ୍ନୀ ସାଂସରିକ ଜୀବନରେ ପାଞ୍ଚଟି ସନ୍ତାନର ଜନନୀ ଥିଲେ । ସେଥିମଧ୍ୟରୁ ପୁତ୍ର ସନ୍ତାନ ତିନୋଟି ଓ କନ୍ୟା ସନ୍ତାନ ଦୁଇଟି । ତାଙ୍କର ପୁତ୍ରକନ୍ୟାମାନେ ହେଲେ :

୧. ବିଜୟକେତନ ଦାଶ
୨. ଶ୍ରୀବତ୍ସ ଦାଶ
୩. ସତ୍ୟବତୀ ପତି
୪. ଅନିରୁଦ୍ଧ ଦାଶ
୫. ଉମା ଦେବତା

## ବିଜୟ କେତନ ଦାଶ :

କବିଙ୍କ ପ୍ରଥମ ସନ୍ତାନ ହେଉଛନ୍ତି ଶ୍ରୀ ବିଜୟକେତନ ଦାଶ । ଏହାଙ୍କର ଜନ୍ମତାରିଖ ୧୮୯୭ ଖ୍ରୀଷ୍ଟାବ୍ଦ ଶ୍ରାବଣ କୃଷ୍ଣପକ୍ଷ ପଞ୍ଚମୀ, ସୋମବାର । ଏହି ମହାଶୟ ମଧ୍ୟ ଜଣେ ସୁଲେଖକ ଥିଲେ । ଏହାଙ୍କର ଖଣ୍ଡିଏ କବିତା ବହି 'ସାବିତ୍ରୀବ୍ରତ' ପ୍ରଥମଥର ପାଇଁ ପ୍ରକାଶିତ ହୋଇଛି । ଏହାଙ୍କର ଗତ ତା ୩୦.୪–୧୯୯୦ ମସିହାରେ ପରଲୋକ ହୋଇଯାଇଛି ।

## ଶ୍ରୀବତ୍ସ ଦାଶ :

କବିଙ୍କ ଦ୍ୱିତୀୟ ପୁତ୍ର ଭାବରେ ଶ୍ରୀବତ୍ସ ଦାଶଙ୍କ ଜନ୍ମ ତା ୨୦.୨.୧୯୦୩ ମସିହାରେ ବରଗଡ଼ ସନ୍ନିକଟ ରୋହିଣୀୟା ଗ୍ରାମରେ ହୋଇଥିଲା । ଏ ମହାଶୟ ଜଣେ ଅତ୍ୟନ୍ତ ମେଧାବୀ ଛାତ୍ର ଥିବା ସହିତ ଜଣେ ଉଚ୍ଚକୋଟୀର ସାହିତ୍ୟିକ ଓ ସଂପାଦକ ଥିଲେ । ତାଙ୍କର ରଚନାବଳୀ ମଧ୍ୟରେ ରହିଛି :

୧. ବାମଣ୍ଡା ବିଜୟ ପର୍ବ
୨. ତାଳଚେର ପ୍ରଶସ୍ତି
୩. ଜଗନ୍ନାଥ–ମାହାତ୍ମ୍ୟ
୪. ଗଦ୍ୟ ମହାଭାରତ
୫. କଥା ସରିତ୍ସାଗର
୬. ରାଜସୂୟଯଜ୍ଞ
୭. ଶନିଦୃଷ୍ଟି

ଶ୍ରୀବତ୍ସ ଦାଶଙ୍କ "ରାଜସୂୟଯଜ୍ଞ"ର ପାଣ୍ଡୁଲିପି ପାଠକରି ତତ୍କାଳୀନ ବାମଣ୍ଡାଷ୍ଟେଟ୍‌ର ଶ୍ରୀମତୀ ରାଜ ପିତାମହୀ ନିଜର ଅଭିମତ ଦେଇ ଲେଖିଥିଲେ :

### ଅଭିମତ

ପଣ୍ଡିତ ଶ୍ରୀବତ୍ସ ଦାଶ ମହାଶୟ !

*ପାଣ୍ଡୁଲିପିମାନ ଦେଖିଲୁଁ । ଆପଣଙ୍କ ଗଦ୍ୟ ଲେଖାର ପରିପାଟୀ ଦେଖି ଅତୀବ ମୁଗ୍ଧ ହୋଇଅଛୁଁ । ଏହା ଗୋଟିଏ ଓଡ଼ିଶାର ଅଭିନବ ଅମୂଲ୍ୟ ରତ୍ନଗ୍ରନ୍ଥ ହେବ । ପାଠକଲେ ଏକ ନିଃଶ୍ୱାସରେ ଶେଷ କରିବାକୁ ମନହୁଏ । ଏଥିନିମନ୍ତେ ଶତ ଧନ୍ୟବାଦ ।*

ତା ୧୬.୩. ୧୯୩୯ — ଶ୍ରୀମତୀ ରାଜ ପିତାମହୀ
(ବାମଣ୍ଡା ଷ୍ଟେଟ୍)

ଠିକ୍ ସେହିପରି ଶ୍ରୀବତ୍ସ ଦାଶଙ୍କର ‘‘ଶନିଦୃଷ୍ଟି’’ ନାମକ ଏକ ଗଦ୍ୟ ରଚନା ପାଠକରି କବିଶେଖର ଚିନ୍ତାମଣି ମହାନ୍ତି ମନ୍ତବ୍ୟ ଦେଇ ଲେଖିଥିଲେ :

### ମନ୍ତବ୍ୟ

*‘ଶନିଦୃଷ୍ଟି’ର ପାଣ୍ଡୁଲିପି ମୁଁ ଆଦ୍ୟୋପ୍ରାନ୍ତ ପାଠ କରିଅଛିଁ । ମୂଳଗ୍ରନ୍ଥର ଭାବ ଗ୍ରହଣ କରି ନିଜ ଭାଷାରେ ରଚନା କରିବା ହିଁ ପ୍ରକୃତ ଅନୁବାଦ, ଅନ୍ୟଥା ଅନୁବାଦ ବିକୃତ ଓ ବିକଳାଙ୍ଗ ହୋଇପଡ଼େ । ଅନୁବାଦକୁ ନିଜସ୍ୱ କରିବା ଅନୁବାଦକର ଲକ୍ଷ୍ୟ ହେବା ଆବଶ୍ୟକ । ନୋଚେତ୍ ଅନୁବାଦ ନିର୍ଜୀବ ହୋଇପଡ଼େ । ସୁଖର ବିଷୟ, ଶ୍ରୀବତ୍ସ ବାବୁଙ୍କ ଅନୁବାଦ ପ୍ରକୃତ ଅନୁବାଦ ହୋଇଛି ।*

*ଏ ଦେଶରେ ଶାସ୍ତ୍ରପୁରାଣ ଆଦି ଅଧିକାଂଶ ପଦ୍ୟରେ ଲିଖିତ । ପୁଣି ତାହା ପ୍ରକ୍ଷିପ୍ତତାରେ ପୂର୍ଣ୍ଣ । ସାଧାରଣତଃ ପଦ୍ୟର ଭାବ ଗଦ୍ୟପରି ପ୍ରାଂଜଳ ହୁଏ ନାହିଁ । ଏହି ହେତୁ ଶିକ୍ଷିତ ବ୍ୟକ୍ତିମାନେ ଗଦ୍ୟକୁ ଅଧିକ ପସନ୍ଦ କରନ୍ତି । ପୌରାଣିକ ଉପାଖ୍ୟାନମାନ ଗଦ୍ୟରେ ଅନୁବାଦିତ ହେଲେ ଶିକ୍ଷିତ ବ୍ୟକ୍ତିମାନଙ୍କର ଆଦରଣୀୟ ହେବେ ଏବଂ ଅଯଥାବୃଦ୍ଧି ନକରି ଯଥାସମ୍ଭବ ସଂକ୍ଷେପରେ ଭାବର ଯାହା କରିଗଲେ ପାଠକମାନଙ୍କର ଧୈର୍ଯ୍ୟଭଂଗ ହେବ ନାହିଁ । ଗଦ୍ୟ ରଚନାରେ ଶ୍ରୀବତ୍ସବାବୁଙ୍କ ଚେଷ୍ଟା ପ୍ରଶଂସାର୍ହ । ତାଙ୍କର ମହାଭାରତ ଅନୁବାଦ ଶୀଘ୍ର ପ୍ରସାରିତ ହେବା ଆବଶ୍ୟକ । ‘ଶନିଦୃଷ୍ଟି’ର ଲେଖା ସରଳ, ପ୍ରାଞ୍ଜଳ ଏବଂ ଭାବପ୍ରାଣ ହୋଇଅଛି । ଆଶାକରେଁ, ସେ ଏଭଳି ନୂଆଁ ନୂଆଁ ଗଦ୍ୟ ଲେଖା ପ୍ରକାଶ କରି ମାତୃ ସାହିତ୍ୟକୁ ପୁଷ୍ଟ କରିବେ ।*

ଶ୍ରୀ ଚିନ୍ତାମଣି ମହାନ୍ତି

ଭଦ୍ରଖ
୨୪.୭.୧୯୩୯

ଶ୍ରୀବତ୍ସ ଦାଶଙ୍କ ପ୍ରବନ୍ଧଗୁଡ଼ିକ ପାଠକରି ତତ୍‌କାଳୀନ ବାମଣ୍ଡା ଷ୍ଟେଟ୍‌ର ସ୍ୱୟଂ ରାଜ ଜେଜେମାତା ମଧ୍ୟ କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କୁ ପ୍ରବନ୍ଧ ସଂପର୍କରେ ଅବଗତ କରାଇଛନ୍ତି । ଶ୍ରୀମତୀ ରାଜ ଜେଜେମାତା ଲେଖିଛନ୍ତି :

ପଣ୍ଡିତ ଶ୍ରୀଯୁକ୍ତ ସ୍ୱପ୍ନେଶ୍ୱର ଦାଶ କବିଭୂଷଣ
ମହାଶୟ ସମୀପେଷୁ !

*ଆପଣଙ୍କର ଲେଖିତ (ଲିଖିତ) 'ବାମଣ୍ଡାରେ ଦଶହରା' ସିର୍ଶକ (ଶୀର୍ଷକ) ପ୍ରବନ୍ଧ ଦେଖି ବଡ଼ ସୁଖି (ସୁଖୀ) ହେଲୁଁ । ସମ୍ୱାଦ ପତ୍ରିକାକୁ ପଠାଇ ଦିଅନ୍ତୁ । ଏବାଦେ ଆପଣଙ୍କ ପୁତ୍ର ଶ୍ରୀ ଶ୍ରୀବତ୍ସଦାଶଙ୍କ 'ଦେବଗଡ଼ରେ କଳାପାହାଡ଼ ଅଭିନୟ' ପ୍ରବନ୍ଧଟି ମଧ୍ୟ ଅତି ଚମତ୍କାର ହୁଇଛି (ହୋଇଛି) । ଖବରକାଗଜରେ ବାହାରିଲେ ଦେଖିବା ପାଇଁ ପ୍ରତିଦିନ ଡାକ ଆସିବାବେଳେ ରେଷ୍ଟିକାଗଜ ପାଇବା ପାଇଁ ଅପେକ୍ଷାରେ ଅଛୁଁ ।*
x x x

ଶ୍ରୀମତୀ ରାଜ ଜେଜେମାତା
ବାମଣ୍ଡାଷ୍ଟେଟ୍
ତା ୨୭.୧୦.୧୯୩୭

ଶ୍ରୀବତ୍ସ ଦାଶଙ୍କ ଏଭଳି ସାରସ୍ୱତ ଗୌରବ କ୍ରମେ କ୍ରମେ ଉତ୍ତରୋତ୍ତର ଉନ୍ନତି ହେଉଥିବା ବେଳେ ହଠାତ୍ ତା ୨୫.୧୧.୧୯୪୨ ମସିହାରେ ଫୁଲବାଣୀଠାରେ ତାଙ୍କର ପରଲୋକ ହୋଇଯାଇଛି । ଶ୍ରୀବତ୍ସ ଦାଶଙ୍କ ମୃତ୍ୟୁରେ ଉଭୟ କବି ଓ କବିପତ୍ନୀ ଗଭୀର ଭାବରେ ମର୍ମାହତ ହୋଇପଡ଼ିଛନ୍ତି । ଏହି ବିୟୋଗବାର୍ତ୍ତା ବହୁଦିନ ଧରି ପତିପତ୍ନୀଙ୍କୁ ସ୍ମରଣ କରାଇଛି । ପୁତ୍ରର ମୃତ୍ୟୁରେ ପଦ୍ମାବତୀ ଦେବୀଙ୍କ ମାନସିକ ଅବସ୍ଥା ବିଗିଡ଼ି ଯାଇଛି । ଏତିକିବେଳେ ସାରସ୍ୱତପୀଠ ବରପାଲିରୁ କବି ଗଙ୍ଗାଧରଙ୍କ ଶ୍ରାଦ୍ଧ ସଭାରେ ଯୋଗ ଦେବା ପାଇଁ କବି ଭୂଷଣଙ୍କ ନିକଟକୁ ନିମନ୍ତ୍ରଣ ପତ୍ର ଆସିଛି । ମାତ୍ର ନିଜ ସ୍ତ୍ରୀଙ୍କ ମାନସିକ ଅବସ୍ଥା ଭଲ ନଥିବାରୁ କବି ନିଜେ ଯାଇପାରି ନାହାନ୍ତି । ଏ ସଂପର୍କରେ ପଣ୍ଡିତ ରାଘବ ମିଶ୍ରଙ୍କୁ ଖଣ୍ଡେ ପତ୍ର ଲେଖି ସମସ୍ତ ବିଷୟ ଜଣାଇଛନ୍ତି । କବିଭୂଷଣଙ୍କ ସେହି ପତ୍ରଟି ହେଉଛି :

ଶ୍ରଦ୍ଧେୟ ରାଘବବାବୁ, ବରଗଡ଼, (ସମ୍ବଲପୁର)
ଶୁଭାଶୀର୍ବାଦ ତା ୨୭.୩.୪୫

*ସ୍ୱର୍ଗତ କବିଙ୍କର ଶ୍ରାଦ୍ଧସଭାରେ ଯୋଗ ଦେବାପାଇଁ ଅନେକଦିନରୁ ଇଚ୍ଛୁକ ଓ ଉତ୍ସୁକ ଥିଲି; କିନ୍ତୁ ମୋର ସ୍ତ୍ରୀଙ୍କର ଅବସ୍ଥା ନେଇଯାଇ ନପାରି ଦୁଃଖବୋଧ କରୁଛି । ଏଥିସହିତ ମୋ ଶୋକାକୁଳ ହୃଦୟର ଭାବ ଲିପିବଦ୍ଧ କରିପଠାଇଲି । ଶ୍ମଶାନ ସଭାରେ ଏହା ତୁମ୍ଭେ ମୋ ପକ୍ଷରୁ ପାଠ କରିଦେବ ବୋଲି ଆଶା କରେଁ । ଶ୍ରାଦ୍ଧସଭାର ବିବରଣୀ ଜାଣିବାକୁ ବାସନା ରହିଲା ।*

ଇତି
ତୁମର ଶୁଭାକାଂକ୍ଷୀ
ଶ୍ରୀ ସ୍ୱପ୍ନେଶ୍ୱର ଦାଶ ।

କବିଭୂଷଣଙ୍କ ପୁତ୍ର ଶ୍ରୀବତ୍ସ ଦାଶ–ଯଦି ଦୀର୍ଘାୟୁ ହୋଇଥାନ୍ତେ ତେବେ ଓଡ଼ିଆ ବାଣୀ ଭଣ୍ଡାରକୁ ବହୁଭାବରେ ଋଦ୍ଧିମନ୍ତ ଓ ପରିପୁଷ୍ଟ କରିଥାନ୍ତେ, ଏଥିରେ ସନ୍ଦେହ ନାହିଁ ।

## ଅନିରୁଦ୍ଧ ଦାଶ. ଆଇ.ଏ.ଏସ୍

କବିଙ୍କ ତୃତୀୟ ପୁତ୍ର ଭାବରେ ଶ୍ରୀ ଅନିରୁଦ୍ଧ ଦାଶ ତା ୧.୬.୧୯୧୩ ମସିହାରେ ଜନ୍ମଲାଭ କରି ତା ୧.୧୧.୧୯୭୫ ମସିହାରେ ପରଲୋକ ଗମନ କରିଥିଲେ । ସେ ପ୍ରଥମେ ଓ.ଏ.ଏସ୍ ସ୍ତରରେ ଥାଇ ପରେ ଆଇ.ଏ.ଏସ୍ ପଦକୁ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ସେକେଣ୍ଡ ଅଫିସର୍, କଲେକ୍ଟର, କମିଶନର ଭଳି ବହୁ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ ଅଧିଷ୍ଠିତ ହୋଇ ନିଜର ପ୍ରଶାସନିକ କାର୍ଯ୍ୟ ସୁଚାରୂ ରୂପେ ସଂପାଦନା କରିଥିଲେ । ଶ୍ରୀ ଅନିରୁଦ୍ଧ ଦାଶ ତା ୧୩.୧୧.୧୯୬୩ ରୁ ତା ୧୦.୧.୧୯୬୫ ମସିହା ପର୍ଯ୍ୟନ୍ତ ବଲାଙ୍ଗୀରରେ କଲେକ୍ଟର ଭାବରେ ନିଜର କାର୍ଯ୍ୟ ତୁଲାଇଥିଲେ । ସେ ମଧ୍ୟ ଜଣେ ସୁଲେଖକ, ଐତିହାସିକ ଓ ଗବେଷକ । ଓଡ଼ିଆ ସାହିତ୍ୟକୁ ତାଙ୍କର ଯଥେଷ୍ଟ ଅବଦାନ ରହିଛି । ସମ୍ବଲପୁର ଜିଲ୍ଲା ସ୍କୁଲରେ ଦଶମ ଶ୍ରେଣୀର ଛାତ୍ରାବସ୍ଥାରେ ପ୍ରସିଦ୍ଧ ଗାଥା କବିତା "ସ୍ୱର୍ଗଜାସମର" ଲେଖିଥିଲେ । ସେହି କବିତାର କିୟଦଂଶ ଏଠାରେ ଉଦ୍ଧାର କରାଗଲା :

"ତୁମେ ଶାଶ୍ୱତ ପ୍ରଭୁ ମଙ୍ଗଳମୟ
ନିଖିଳ ବିଶ୍ୱ ଆଧାର,
ତବ କୃପାକରେ ମୋର ଅନ୍ତରୁ
ନାଥ ଦୂର ହେଉ ମୋହ ଅନ୍ଧାର ।।

ଦୈନ୍ୟ ଦଗ୍‌ଧ ଶୂନ୍ୟ ପରାଣେ
ଚାଲିଛି ଅନନ୍ତ ପଥରେ,
ପ୍ରଭୁ ଜାଣେନା ଜାଣେନା
ସନ୍ତାଇବ କେତେ
କେଡ଼େ ନିର୍ମମ ଅନ୍ତରେ ।।
ତୁମେ ବିଶ୍ୱ ବିପଦ ହନ୍ତା
ନାଥ ଅନାଥ ହୃଦୟସନ୍ତା,
ତବ ଶ୍ରୀଚରଣ ତଳେ ମାଗୁଣି ପ୍ରଭୁ ହେ
ମୋ ହୃଦୟେ କର ବିହାର ।।
ଅଛ ଭୂଧର ପ୍ରାନ୍ତରେ
ସାଗରେ କନ୍ଦରେ କନ୍ଦରେ
ଅନ୍ତରେ ଅନ୍ତରେ ସବୁରି
ତୁମେ ଅନୀଳେ ଅନଳେ
ମୂକ ନୀଳନଭେ କ୍ଷଣେକ୍ଷଣେ ଯାଅ ବିହରି ।।
ମୁଁ ଯେ ଅଜ୍ଞାନ ନୟନ ବାନ୍ଧି
ଭ୍ରମେ ଅନନ୍ତ ଜଗତ କାନ୍ଦି
ଆଉ କନ୍ଦାଅନା ନାଥ
କନ୍ଦାଇବ କେତେ
ତାର ଅବା କର ସଂହାର ।"
(ଉଦ୍ଧୃତ : ସ୍ମୃତିସ୍ନାନ–୨୦୧୨, ପୃ.୭)

କିନ୍ତୁ ପରବର୍ତ୍ତୀ ଜୀବନରେ ସେ ଆଉ କବିତା ଆଦି ନ ଲେଖି ଉଚ୍ଚତର ଇତିହାସ ଗବେଷଣା କାର୍ଯ୍ୟରେ ହାତ ଦେଇଛନ୍ତି । ଯେଉଁ କାର୍ଯ୍ୟ କି ତାଙ୍କୁ ଅନ୍ତିମ ଜୀବନରେ ଓଡ଼ିଶାର ଜଣେ ବିଶିଷ୍ଟ ଐତିହାସିକ ଭାବରେ ସମ୍ମାନ ଦେଇଛି । ତାଙ୍କ ରଚିତ ପୁସ୍ତକ ଗୁଡ଼ିକ ହେଲା :

ଓଡ଼ିଆ–

୧. ବୀର ସୁରେନ୍ଦ୍ର ସାଏ
୨. ନବ କଳେବର
୩. ଓଡ଼ିଶାରେ ପଞ୍ଚାୟତି ରାଜ
୪. ଶବର
୫. ମେରିଆ

୬. ଶ୍ରୀଜଗନ୍ନାଥ ଓ ନେପାଳ

ଇଂରାଜୀ–

୧. Origin and Development of Board of Revenue and Divisional Commissioners.

୨. Life of Surendra Sai.

୩. Lord Jagannath and Nepal

ଏହା ବାହାରେ ତାଙ୍କର ଇଂରାଜୀରେ ଲିଖିତ ବହୁ ଗବେଷଣାମୂଳକ ପ୍ରବନ୍ଧ ରହିଛି । ତାଙ୍କର "ବୀର ସୁରେନ୍ଦ୍ର ସାଏ" ପୁସ୍ତକଟି ପାଠ କରି ଓଡ଼ିଶାର ତତ୍‌କାଳୀନ ଚିଫ୍ ସେକ୍ରେଟାରୀ ମିଷ୍ଟର ବି. ଶିବରମଣ ଲେଖିଥିଲେ :

**Foreword :**

Shri Anirudha Das has made a Laborious study of the history of Shri Surendra Sai who, for long years kept up the flag of revolt flying in the Sambalpur area against colonisation by the British. The book gives a very Interesting view of condition prevailing in Sambalpur a hundred years ago.

'Shri Surendra Sai' hesitated when he should have forced the pace. The history shows that a weakling in charge creates, a false sense of security and fairness which lulls the apponents into Inaction. The Weak man Succeeded for the British Government Whereas a strong man would have failed."

Sd/- B. Sivaraman.
11.1.1962
(Chief Secretary, Government of Orissa)

ଅନିରୁଦ୍ଧ ଦାଶଙ୍କ ଦାମ୍ପତ୍ୟ ଜୀବନର ପ୍ରାଥମିକ ପାହାଚରେ ଗୋଟିଏ ବଡ଼ଧରଣର ଝଡ଼ ଆସିଥିଲା । ବିବାହର ଏକବର୍ଷ ପରେ ସେ ପ୍ରଥମାପତ୍ନୀଙ୍କୁ ହରାଇଥିଲେ । ପ୍ରଥମା ପତ୍ନୀଙ୍କ ମୃତ୍ୟୁପରେ ସମ୍ବଲପୁରର ବିଶିଷ୍ଟ ଲୋକପ୍ରିୟ କଳାକାର ଓ ଜ୍ୟୋତିର୍ବିଦ୍ ଶ୍ରୀ ବାସୁଦେବ ତ୍ରିପାଠୀଙ୍କ ସୁଯୋଗ୍ୟକନ୍ୟା ହରପ୍ରିୟାଙ୍କୁ ଦ୍ୱିତୀୟଥର ପାଇଁ ବିବାହ କରିଥିଲେ । ଅନିରୁଦ୍ଧ ଦାଶଙ୍କ ଗୋଟିଏ ବଡ଼ ପରିବାର । ତାଙ୍କର ପୁତ୍ରକନ୍ୟା ହେଉଛନ୍ତି ମୋଟ୍ ୧୩ ଜଣ ଏବଂ ସମସ୍ତେ ନିଜ ନିଜ କ୍ଷେତ୍ରରେ ରହି ବର୍ତ୍ତମାନ କେହି କେହି ସାହିତ୍ୟ ସାଧନା କରୁଛନ୍ତି । ଅନିରୁଦ୍ଧଙ୍କ ପୁତ୍ର କନ୍ୟାମାନେ

ହେଲେ :

୧. ନିତ୍ୟାନନ୍ଦ ଦାଶ
୨. ମନୋରଞ୍ଜନ ଦାଶ
(ଉଭୟେ ମୃତ)
୩. ଚିତ୍ତରଞ୍ଜନ ଦାଶ
୪. ଜ୍ଞାନରଞ୍ଜନ ଦାଶ
୫. ଡାକ୍ତର ଜ୍ୟୋତିରଞ୍ଜନ ଦାଶ
୬. ବାଣୀରଞ୍ଜନ ଦାଶ
୭. ଗୋପୀରଞ୍ଜନ ଦାଶ
୮. ବ୍ରଜରଞ୍ଜନ ଦାଶ
୯. ଡକ୍ଟର ଶ୍ରୀମତୀ ସନ୍ଧ୍ୟାରାଣୀ ଦାଶ
୧୦. ଡାକ୍ତର ଉଷାରାଣୀ ଦାଶ
୧୧. ବ୍ୟୋମରଞ୍ଜନ ଦାଶ
୧୨. ବିଶ୍ୱରଞ୍ଜନ ଦାଶ
୧୩. ଶ୍ରୀମତୀ ସୁଧାରାଣୀ ଦାଶ

## ସତ୍ୟବତୀ ପତି :

ସମ୍ବଲପୁରର ସୁଯୋଗ୍ୟସନ୍ତାନ ସ୍ୱର୍ଗୀୟ ମଧୁସୂଦନ ପତିଙ୍କ ପୁତ୍ର ମୃତ୍ୟୁଞ୍ଜୟ ପତିଙ୍କ ସହିତ କବିଙ୍କ କନ୍ୟା ସତ୍ୟବତୀଙ୍କର ବିବାହ ହୋଇଥିଲା । ସତ୍ୟବତୀ ଦେବୀଙ୍କ ଉପରେ ନିଜର ପିତାମାତାଙ୍କର ଗଭୀର ପ୍ରଭାବ ପଡ଼ିଥିଲା । ଫଳରେ ତାଙ୍କର ମଧ୍ୟ ସାମାନ୍ୟ ରଚନା ଶକ୍ତି ଥିଲା । ସତ୍ୟବତୀ ଦେବୀ ଜଣେ ଆଦର୍ଶ ଗୃହିଣୀ ଓ ପତ୍ନୀ ହୋଇପାରିଥିଲେ । ତାଙ୍କ ଜୀବଦ୍ଦଶାରେ ତାଙ୍କ ରଚିତ ଦୁଇଟି ପୁସ୍ତକ ପ୍ରକାଶିତ ହୋଇଥିଲା । ସେଗୁଡ଼ିକ ହେଉଛି:–

୧. ସତ୍ୟବତୀ ଶୋକ
୨. ଦୁଃଖିନୀ ଜଣାଣ

ସତ୍ୟବତୀ ଦେବୀ ୬ଟି ପୁତ୍ର ସନ୍ତାନ ଓ ୨ଟି କନ୍ୟା ସନ୍ତାନ–ମୋଟ ଆଠଟି ସନ୍ତାନର ଜନନୀ ହୋଇପାରିଥିଲେ । ସେମାନଙ୍କ ଆଠଟି ସନ୍ତାନ ହେଲେ :

୧. ଶ୍ରୀ ଲଳିତ କୁମାର ପତି–ଜନ୍ମ ୧୮.୫.୧୯୧୭,
ମୃତ୍ୟୁ ୨୪.୧୦.୧୯୯୮

୨. ଡକ୍ଟର ଶ୍ରୀ ପ୍ରଫୁଲ୍ଲ କୁମାର ପତି–ଜନ୍ମ ୧୧.୯.୧୯୨୧,
ମୃତ୍ୟୁ ୨୧.୧.୨୦୦୬ (ପୂର୍ବତନ କୁଳପତି–ସମ୍ବଲପୁର ବିଶ୍ୱବିଦ୍ୟାଳୟ)
୩. ଡାକ୍ତର ପ୍ରସନ୍ନ କୁମାର ପତି
(ଆମେରିକାରେ ଡାକ୍ତର ଓ ସେଠାକାର ନାଗରିକତ୍ୱ ଗ୍ରହଣ)
୪. ସରୋଜିନୀ ପତି–
୫. ପ୍ରମୋଦିନୀ ମିଶ୍ର–ଜନ୍ମ ୧୯୩୦ : ମୃତ୍ୟୁ ୧୦.୬.୨୦୧୦ : ଗୁରୁବାର
୬. ରାମନାରାୟଣ ପତି
୭. ନରେନ୍ଦ୍ର ନାରାୟଣ ପତି
୮. ଦେବେନ୍ଦ୍ର ନାରାୟଣ ପତି

## ଉମାଦେବୀ ବା 'କୁମାରୀ'

କବିଙ୍କ ପଞ୍ଚମ ସନ୍ତାନ ଭାବେ ଉମାଦେବୀଙ୍କ ଜନ୍ମ । ସେ ବରଗଡ଼ ସନ୍ନିକଟ ଗୁଡ଼େଶିରା ଗ୍ରାମର ଶ୍ରୀକାଳୀଚରଣ ଦେବତାଙ୍କୁ ବିବାହ କରିଥିଲେ । ତାଙ୍କ ସମ୍ପର୍କରେ ବିଶେଷ କିଛି ତଥ୍ୟ ଏହି ଆଲୋଚକ ପାଖରେ ନାହିଁ ।

କବି ସ୍ୱପ୍ନେଶ୍ୱରଙ୍କ ଗଭୀର ପ୍ରଭାବ ତାଙ୍କର ପୁତ୍ର କନ୍ୟାମାନଙ୍କ ଉପରେ ପଡ଼ିଥିଲା । ଫଳରେ ସମସ୍ତ ପୁତ୍ରକନ୍ୟାମାନେ ମଧ୍ୟ ନିଜନିଜ ସନ୍ତାନମାନଙ୍କୁ ସଭ୍ୟ, ସୁଶିକ୍ଷିତ, ମଣିଷ କରାଇପାରିଥିଲେ ।

## କବିଙ୍କ ବ୍ୟକ୍ତିଗତ ଚରିତ୍ର :

କବି ସ୍ୱପ୍ନେଶ୍ୱର ଥିଲେ ଜନ୍ମରୁ ଗଭୀର ଈଶ୍ୱରବିଶ୍ୱାସୀ । ଈଶ୍ୱରଙ୍କ ପ୍ରତି ତାଙ୍କର ଅତୁଟ ଶ୍ରଦ୍ଧା ଓ ଭକ୍ତି ରହିଥିଲା । କବି ନିଜର ସମସ୍ତ ଅଭାବ, ଅସୁବିଧା ସତ୍ତ୍ୱେ ସତ୍ୟ ଓ ଧର୍ମପଥରେ ନିରନ୍ତର ଅଟଳ ରହି ନିଜର ଜୀବନ ନିର୍ବାହ କରୁଥିଲେ । ସକାଳେ ଓ ସନ୍ଧ୍ୟା ସମୟରେ ସ୍ନାନ ସମାପନ ପୂର୍ବକ ନିଜ ଗୃହରେ ପୂଜାପାଠ କରୁଥିଲେ ଏବଂ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ଲିଖିତ "ଶିବଭୂଜଙ୍ଗ ପ୍ରୟାତ ସ୍ତୋତ୍ରମ୍" ଶ୍ଳୋକଟି ପାଠ କରୁଥିଲେ । କବି ଯେଉଁ ଶ୍ଳୋକଟି ଉଚ୍ଚାରଣ କରୁଥିଲେ ତାହା ଏଠାରେ ସଂପୂର୍ଣ୍ଣ ରୂପରେ ଉଦ୍ଧାର କରାଗଲା :

(୧)

ଶିବଂ ଶଙ୍କରଂ ଭୈରବଂ ଭୂତନାଥଂ ଭବଂ ଭୂତିଦଂ ଭୂମିଦଂ ଭାସ୍ମଭୂଷଂ ।
ହରଂ ହାରକଂ ତାରକଂ ଜନ୍ମସିଦ୍ଧଂ ଭଜେଦ୍ଧହଂ ସଦା ପାର୍ବତୀ ପ୍ରାଣନାଥମ୍ ।।

(୨)

ଶିବଂ ଚାରୁଭାସଂ ଶୁଭଘଣ୍ଟଂ ସୁଭାଷଂ ଶିବଂ ଶୁକ୍ଳକେଶଂ ସୁଚନ୍ଦ୍ରାବତଂ ସଂ ।
ଶିବଂ ନାଗପାଶଂ ଦାରିଦ୍ର୍ୟ ବିନାଶଂ ଭଜେଦ୍ଧହଂ ସଦା ପାର୍ବତୀ ପ୍ରାଣନାଥମ୍ ।।

(୩)

ଶିବଂ ଦାନବଂ ମାନବଂ ମାନଶୀଳଂ ଶିବଂ କର୍ମ୍ମଦଂ ଧର୍ମଦଂ ଧର୍ମବୀରଂ ।
ଶିବଂ ବୁଦ୍ଧିଦଂ ସିଦ୍ଧିଦଂ ସିଦ୍ଧିମୂଳଂ ଭଜେଦ୍ଧହଂ ସଦା ପାର୍ବତୀ ପ୍ରାଣନାଥମ୍ ।।

(୪)

ଶିବଂ ଚନ୍ଦ୍ରଭାଲଂ ଗଳେ ମୁଣ୍ଡମାଳଂ ତନୁ ସର୍ପଜାଳଂ କରେ ସୁକପୋଳଂ ।
ଶିବଂ ଭୂତିଦଂ ଭୂମିଦଂ ଶୀକରାଭଂ ଭଜେଦ୍ଧହଂ ସଦା ପାର୍ବତୀ ପ୍ରାଣନାଥମ୍ ।।

(୫)

ଶିବଂ ବାମଦେବଂ ଭବାବ୍ଧ୍ୟମ୍ବୁବାରଂ ଶିବଂ ନାଗହରଂ ପୀନାକ ପ୍ରହାରଂ ।
ଶିବଂ ଦୁଃଖଦାରିଦ୍ର୍ୟ ବଧ୍ୱଂ ସକାରଂ ଭଜେଦ୍ଧହଂ ସଦା ପାର୍ବତୀ ପ୍ରାଣନାଥମ୍ ।।

(୬)

ଶିବଂ ଶୂଳୀନଂ ବାଣୀଶଂ ଦଣ୍ଡହସ୍ତଂ ଶିବଂ ଖଡ୍‌ଗଗଦାପାଶ ହସ୍ତଂ ପ୍ରକର୍ଷଂ ।
ଶିବଂ ସାଧୁବାଦଂ ପ୍ରସଙ୍ଗଂ ପ୍ରସନ୍ନଂ ଭଜେଦ୍ଧହଂ ସଦା ପାର୍ବତୀ ପ୍ରାଣନାଥମ୍ ।।

(୭)

ଶିବଂ କାଳକାଳଂ କରାଳଂ ବିଶାଳଂ ଶିବଂ ବିଶ୍ୱପାଳଂ ରସଜ୍ଞଂ ରସାଳଂ ।
ଶିବଂ ପାର୍ବତୀବଲ୍ଲଭଂ ଦେବପାଳଂ ଭଜେଦ୍ଧହଂ ସଦା ପାର୍ବତୀ ପ୍ରାଣନାଥମ୍ ।।

(୮)

ଭୂଜଙ୍ଗ ପ୍ରୟାତେ ଶିବଂ ସ୍ତୋତ୍ରମେତଦ୍ ତ୍ରିସନ୍ଧ୍ୟା ପଠେଦ୍ ଯଃ ସମାଧାନ...
ଭବେଦ୍ ଦୃଶ୍ୟତାଂ ସିଦ୍ଧି ମାନନ୍ଦମୁକ୍ତଂ ଭଜେଦ୍ଧହଂ ସଦା ପାର୍ବତୀ ପ୍ରାଣନାଥମ୍ ।।

(ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ– ୧୯୬୩)

## 'ଉତ୍କଳ ସମ୍ମିଳନୀ'ରେ ଯୋଗଦାନ :

''ଉତ୍କଳ–ସମ୍ମିଳନୀର ଏକାଦଶ ଅଧିବେଶନ ୧୯୧୫ ମସିହା ଡିସେମ୍ବର ମାସ ୨୭ ଓ ୨୮ ତାରିଖରେ ସମ୍ବଲପୁର ସହରର ଉତ୍ତରରେ ଥିବା ବୁଢ଼ାରଜା ପର୍ବତର ପାଦଦେଶରେ ଏକ ବିସ୍ତୃତ ପଡ଼ିଆରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନ ପାଇଁ ଗଠିତ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଥିଲେ ବରଗଡ଼ର ଓକିଲ ବାଲୁଙ୍କେଶ୍ୱର ମିଶ୍ର ଓ ଅଧିବେଶନର ସଭାପତି ଥିଲେ ସିଂହଭୂମ ଅନ୍ତର୍ଗତ କେରାର ଜମିଦାର/ରାଜା ଲକ୍ଷ୍ମୀନାରାୟଣ ସିଂହଦେବ । ସମ୍ମିଳନୀର ମୁଖ୍ୟ ବ୍ୟୟଭାର ବହନ କରିଥିଲେ ପାଟନା (ବଲାଙ୍ଗୀର) ମହାରାଜା ପୃଥ୍ୱୀରାଜ ସିଂହଦେବ ଓ ସମ୍ମିଳନୀର ସଂପାଦକ ଥିଲେ ନିତ୍ୟାନନ୍ଦ ପଟ୍ଟନାୟକ ।

ପଶ୍ଚିମ ଓଡ଼ିଶାରେ ଏହା ଥିଲା ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ । ସେଥିପାଇଁ ପଶ୍ଚିମ ଓଡ଼ିଶାର, ବିଶେଷତଃ ସମ୍ବଲପୁରର ଲୋକମାନଙ୍କ ମଧ୍ୟରେ ଏହା ଅଭୂତପୂର୍ବ ଉନ୍ମାଦନା ସୃଷ୍ଟି କରିଥିଲା ଓ ସଭାମଣ୍ଡପରେ ଗ୍ରାମାଞ୍ଚଳରୁ ହଜାର ହଜାର ଲୋକ ଆସି ସମବେତ ହୋଇଥିଲେ । ଫଳରେ ଏହା ଏକ ବିରାଟ ମେଳାର ରୂପ ନେଇଥିଲା । ବୟସାଧିକ୍ୟ ହେତୁ ସଭାପତି ଆପଣା ଅଭିଭାଷଣ ପାଠକରି ପାରି ନଥିଲେ ଓ ତାହା ଉପସ୍ଥାପନ କରିଥିଲେ ପଣ୍ଡିତ ଗୋପବନ୍ଧୁ ଦାସ । ସର୍ବ ଭାରତୀୟ ଖ୍ରୀଷ୍ଟିୟାନ ସମ୍ମିଳନୀରେ ଯୋଗଦେବାକୁ ଯାଇଥିବାରୁ ଉତ୍କଳଗୌରବ ମଧୁସୂଦନ ଏହି ଅଧିବେଶନରେ ଯୋଗ ଦେଇ ନଥିଲେ ।"

ଉଦ୍ଧୃତ : ଉତ୍କଳ ସମ୍ମିଳନୀ–ପ୍ରଥମ ଖଣ୍ଡ, ପୃଷ୍ଠା–୩୪୦ : ୨୦୦୫
(ସଂ) ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ । ପ୍ରଗତି ଉତ୍କଳ ସଂଘ, ରାଉରକେଲା

ସମ୍ବଲପୁରରେ ଅନୁଷ୍ଠିତ 'ଉତ୍କଳ–ସମ୍ମିଳନୀ'ର ଏହି ଏକାଦଶ ଅଧିବେଶନରେ ଯୋଗଦାନ କରିବା ଫଳରେ ସେ ବହୁ ମନୀଷିମାନଙ୍କର ସାନ୍ନିଧ୍ୟ ଲାଭ କରିଥିଲେ । ଏହି ଅଧିବେଶନକୁ ନିମନ୍ତ୍ରିତ ହୋଇ ଆସିଥିବା ବ୍ୟାସକବି ଫକୀରମୋହନ ସେନାପତି, କବିଭୂଷଣ ସ୍ୱପ୍ନେଶ୍ୱରଙ୍କ କେତେଖଣ୍ଡ ପାଣ୍ଡୁଲିପି ଦେଖି ତାଙ୍କୁ କୋଳାଗ୍ରତ କରି ପକାଇଥିଲେ । ସେତେବେଳେ ସ୍ୱପ୍ନେଶ୍ୱର ମଧ୍ୟ ବ୍ୟାସକବିଙ୍କୁ ଯଥାପୂର୍ବକ ସମ୍ମାନ ପ୍ରଦର୍ଶନ କରିଥିଲେ ।

## ସାହିତ୍ୟିକ ମତଭେଦ :

୧୯୧୮ ମସିହାରେ କବି ଗଙ୍ଗାଧରଙ୍କ 'ଅର୍ଘ୍ୟଥାଳୀ' ପୁସ୍ତକ ଖଣ୍ଡିଏ ସ୍ୱପ୍ନେଶ୍ୱର ଦାଶଙ୍କ ହସ୍ତଗତ ହୋଇଥିଲା । ତାହା ପାଠ କରି ସ୍ୱପ୍ନେଶ୍ୱର ଦାଶ 'ଉତ୍କଳସେବକ' ପତ୍ରିକାର ଦୁଇଟି ସଂଖ୍ୟାରେ 'ଅର୍ଘ୍ୟଥାଳୀ'ର ସମାଲୋଚନା ପ୍ରକାଶ କରିଥିଲେ । ସେତେବେଳେ କିନ୍ତୁ ଅର୍ଘ୍ୟଥାଳୀର ବ୍ୟାକରଣ ଦୋଷ ସଂପର୍କରେ ଆଉ କିଛି ନଲେଖିବାକୁ ଉତ୍କଳର ଅନେକ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ, କବି ସ୍ୱପ୍ନେଶ୍ୱର ଦାଶଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଏପରିକି ଉତ୍କଳର ବିଶିଷ୍ଟ ସାହିତ୍ୟିକ ଗୋପାଳ ଚନ୍ଦ୍ର ପ୍ରହରାଜ, କବି ବ୍ରଜମୋହନ ପଣ୍ଡା, କବିଶେଖର ଚିନ୍ତାମଣି ମହାନ୍ତି, 'ଆଶା' ପତ୍ରିକାର ସଂପାଦକ ଶଶୀଭୂଷଣ ରଥ ସ୍ୱତନ୍ତ୍ର ଭାବେ ପତ୍ର ଲେଖିଛନ୍ତି କବି ସ୍ୱପ୍ନେଶ୍ୱରଙ୍କୁ । ପାଠକମାନଙ୍କ ଜାଣିବା ସକାଶେ କବି ଚିନ୍ତାମଣି ମହାନ୍ତି ଓ ସାହିତ୍ୟିକ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପତ୍ର ଦୁଇଟି ଏଠାରେ ପ୍ରକାଶ କରାଗଲା :

(୧)

କବିଶେଖର ଚିନ୍ତାମଣି ମହାନ୍ତିଙ୍କ ପତ୍ର

ଶ୍ରୀହରିଃ ଶରଣମ୍ ।

ଇଚ୍ଛାପୁର (ଗଞ୍ଜାମ)
ତା ୩.୨.୧୯୧୯

ସପ୍ରଣାମ ନିବେଦନ ।

ଭକ୍ତିଭାଜନ ନନା,

ବୟୋବୃଦ୍ଧ ଜ୍ଞାନରେ ଭାଇ ବୋଲି ଡାକି ପକାଇଲି । ଧୃଷ୍ଟତା କ୍ଷମା କରିବେ । ଗତ ସପ୍ତାହର 'ଉତ୍କଳସେବକ' ପଢ଼ି ମୁଁ କେତେଦୂର ସନ୍ତୁଷ୍ଟ ହୋଇଅଛି, ତାହା କହିବାକୁ ମୋର ଶକ୍ତି ନାହିଁ । ଆପଣଙ୍କର ସହିତ ମୋର ଚାକ୍ଷୁସ ପରିଚୟ ନାହିଁ, କେବଳ ପତ୍ରରେ ପରିଚୟ ମାତ୍ର । ଆପଣଙ୍କ ଲେଖାରୁ ମୁଁ ଜାଣୁଅଛି, ଆପଣଙ୍କ ପରି ସାହିତ୍ୟିକ ସମଗ୍ର ଉତ୍କଳରେ ୫/୭ ଜଣ ଅଛନ୍ତି କି ନା ସନ୍ଦେହ । ସମ୍ବଲପୁରରେ ଜଣେ ସମ୍ପାଦକ ମିଳେ ନାହିଁ ବୋଲି କିଛି ଦିନ ପୂର୍ବରେ ଗୋଟିଏ ହୁଡୁକୋ ଉଠିଥିଲା । ଆପଣଙ୍କ ପରି ପଣ୍ଡିତ ଥାଉଥାଉ ଏ ରୂପ ଅମୂଳକ ଜନବାଦ ଯେ କାହିଁକି ଉଠିଥିଲା, ସେଥିରେ କିଛି କାରଣ ମୁଁ ପାଏଁ ନାହିଁ ।

ଆପଣଙ୍କ ରଚିତ ବ୍ୟାକରଣ ଖଣ୍ଡିକ ଦେଖିବାକୁ ମୁଁ ଆଗ୍ରାହାନ୍ୱିତ । ଦେଖିଲାପରେ ମୋର କ୍ଷୁଦ୍ର ଗଣ୍ଡିରେ ଯଦି କିଛି ହୋଇପାରିବ, ତାହା ମୁଁ କରିବାକୁ ପ୍ରସ୍ତୁତ । ଜଣକ ଦ୍ୱାରା ନ ହେଲେ, ଏକାଧିକ ବ୍ୟକ୍ତିଙ୍କଠାରୁ ସାହାଯ୍ୟ ଚେଷ୍ଟା କରାଯିବ । ଆଗାମୀ ଏପ୍ରିଲ୍ ମାସରେ ସୁରଙ୍ଗୀ ପଟ୍ଟକୁମାରଙ୍କର ବ୍ରତୋତ୍ସବ ହେବ । ଆପଣ ଆମନ୍ତ୍ରିତ ହେବେ । ସେଥିର ବ୍ୟବସ୍ଥା ମୁଁ କରିବି । ସେହି ସମୟରେ ବ୍ୟାକରଣ ଖଣ୍ଡିକ ସଂଗରେ ଆଣିଲେ ମୋ ଦେଖିବାର ସୁବିଧା ହେବ । ଆପଣ ଏଠାକୁ ଆସିଲେ ପାରଳା ମହାରାଜାଙ୍କୁ ଲେଖି ସେଠାକୁ ଯିବାର ସୁବିଧା କରିଦେବି । ଇଚ୍ଛା କଲେ ସେ ଏକାକୀ ଛପାଇ ଦେଇ ପାରନ୍ତି ।

'ଅର୍ଘ୍ୟଥାଳୀ'ର ସମାଲୋଚନା ଦେଖିଲି । "ପୃଥିବୀରେ" ଓ "ପଦବୀ"ରେ ଏହି ଦୁଇପଦର ମିତ୍ରାକ୍ଷର ସମ୍ବନ୍ଧରେ ଯାହା କରିଅଛନ୍ତି, ତେତିକିରୁ ମୁଁ ଆପଣଙ୍କର ଅସାଧାରଣ ସାହିତ୍ୟ–ଦକ୍ଷତାର ପରିଚୟ ପାଉଅଛି । ତାହା ବଡ଼ ଗହନ କଥା । ସମସ୍ତେ ତାହା ବୁଝିବେ ନାହିଁ । ତୃତୀୟ ବର୍ଣ୍ଣରେ ଉପାଧା ରହିଥିଲେ ସେ ଦୋଷ କଟିଯାଇଥାନ୍ତା । ଦ୍ୱିତୀୟ ବର୍ଣ୍ଣରେ ସମତା ରଖିବା ଦ୍ୱାରା ଅନେକ ପରିମାଣରେ ଦୁର୍ବଳ ମିତ୍ରାକ୍ଷର ଦୋଷ କଟିଯାଇଅଛି; ମାତ୍ର ସଂପୂର୍ଣ୍ଣ ନୁହେଁ । ମିତ୍ରାକ୍ଷର ବନ୍ଧନରେ ପଡ଼ି ଅନେକ ସମୟରେ ହରବର ହେବାକୁ ପଡ଼େ ।

ବ ଏବଂ ଭ ସମୋଚ୍ଚାରିତ ବର୍ଣ୍ଣ ହେତୁ ମିତ୍ରାକ୍ଷର ଦୋଷାବହ ନୁହେଁ । ପ୍ରାଚୀନ ସାହିତ୍ୟ ଛାଡ଼ିଦେଲେ ସୁଦ୍ଧା ଆଧୁନିକ ସାହିତ୍ୟରେ ସେପରି ମିତ୍ରାକ୍ଷର ଯଥେଷ୍ଟ ଅଛି । ତୁଷ୍ଟି ଓ ବୃଷ୍ଟି ସମ୍ବନ୍ଧରେ ସୁଦ୍ଧା ସେହି କଥା । କବିବର ରାଧାନାଥଙ୍କର ସାହିତ୍ୟରେ ଏପରି ପ୍ରୟୋଗ ଅନେକ ଅଛି । ଅନୁପ୍ରାସ ଭଙ୍ଗ ସମ୍ବନ୍ଧରେ ମୋର ଏତିକି ବକ୍ତବ୍ୟ ଯେ, କବି ସେଠାରେ ଭାବସ୍ରୋତରେ ଭାସି ଯାଇଛନ୍ତି । ଅନୁପ୍ରାସ ଆଡ଼କୁ ଦୃଷ୍ଟି ଦେଇ ନାହାନ୍ତି । ଦେଇଥିଲେ ଭାବ ରକ୍ଷା ଦୁରୂହ ହୋଇଥାନ୍ତା । କବି ବର୍ତ୍ତମାନ ସିଦ୍ଧହସ୍ତ । ଏ ଅବସ୍ଥାରେ ସ୍ୱଭାବତଃ ଭାବ ଆଡ଼କୁ ଦୃଷ୍ଟି ଯାଇଥାଏ ।

ମୁଁ ଭଲ ଅଛିଁ । ଆଶା କରେଁ, ଆପଣ ସୁସ୍ଥ ଥିବେ ।

ପ୍ରଣତ

ଶ୍ରୀଚିନ୍ତାମଣି ମହାନ୍ତି

(୨)

## ସାହିତ୍ୟିକ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପତ୍ର

ପ୍ରିୟ ସ୍ୱପ୍ନେଶ୍ୱର ବାବୁ ।

କଟକ

ତା ୧.୨.୧୯୧୯

ମୁଁ ସେଦିନ ସମ୍ବଲପୁରସ୍ଥ 'ଉତ୍କଳ ସମ୍ମିଳନୀ' ମଣ୍ଡପରେ ଆପଣଙ୍କର ଓଜସ୍ୱିନୀ ବକ୍ତୃତା ଶୁଣି ଏକାବେଳକେ ବିମୁଗ୍ଧ ହୋଇଯାଇଥିଲି । ବସାକୁ ଆସି ଆପଣଙ୍କ ସମ୍ବନ୍ଧରେ ମୋର ସେଠାକାର ବନ୍ଧୁମାନଙ୍କ ସହିତ ଢେର୍ ବାର୍ତ୍ତାଳାପ ହୋଇଥିଲା । ମୁଁ ଶୁଣି ବିସ୍ମିତ ହୋଇଥିଲି ଯେ, ସମ୍ବଲପୁର ଡି: କା: ଆପଣଙ୍କ ଭଳି ଜଣେ ପ୍ରବୀଣ ଶିକ୍ଷାଚାର୍ଯ୍ୟଙ୍କୁ ଡିସ୍‌ଚାର୍ଜ କରି ଦେଇଅଛନ୍ତି । ମୁଁ ବର୍ତ୍ତମାନ ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଆଶ୍ୱସ୍ତ ହେଉଛି ଯେ, 'ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳ ନିମନ୍ତେ ।' ଆପଣ ଶିକ୍ଷାବିଭାଗ ଛାଡ଼ି ନଥିଲେ ଦେଶର କିଛି ଉପକାର କରିପାରି ନଥାନ୍ତେ । ବିଗତ କେତେଦିନ ହେଲା, 'ଉତ୍କଳ ସେବକ' ପ୍ରତି ମୋର ଗୋଟିଏ ପ୍ରବଳ ଆଶଂକା ଜନ୍ମିଯାଇଛି । ଏଥିପୂର୍ବେ 'ଉତ୍କଳ ସେବକ' ରେ ଦୁଇଜଣ ସେବକଙ୍କର କାଣ୍ଡଜ୍ଞାନ ହୀନତା ଦେଖି ମୋ' ମନରେ ବାସ୍ତବିକ ଦୁଃଖଜାତ ହୋଇଥିଲା । ମୁଁ 'ସେବକ'ଟାକୁ ସେ'ବକ ବୋଲି ତାସଲ୍ୟ ଦୃଷ୍ଟିରେ ଅଳିଆ ଟୋକେଇରେ ଫୋପାଡ଼ି ଦେଉଥିଲି । ମଙ୍ଗଳନିଧାନ ପରମେଶ୍ୱର ଆପଣଙ୍କର ଉନ୍ନତି ବିଧାନ କରନ୍ତୁ, ଏହା ମୋର ଐକାନ୍ତିକ ପ୍ରାର୍ଥନା ।

ଏଠାରେ ମୋର ଗୋଟିଏ ଅନଧିକାର ଚର୍ଚ୍ଚାଜନିତ ଧୃଷ୍ଟତା ମାର୍ଜନା କରିବେ । 'ଅର୍ଘ୍ୟଥାଳୀ'ର ଯୋଡ଼ାଏ ସମାଲୋଚନା ପ୍ରବନ୍ଧ ମନଯୋଗ ସହିତ ପଢ଼ିଛି । ବ୍ୟାକରଣ ଅଳଙ୍କାର–ନୀତି ଥାଉ, ବ୍ୟବହାର ନୀତି ସମ୍ବନ୍ଧରେ ମୁଁ ଏତିକି କହୁଛି ଯେ, କବିବର

ଗଙ୍ଗାଧର ବହୁକାଳ ପରେ ପୁଣି ସାହିତ୍ୟ-କ୍ଷେତ୍ରରେ ଦେଖା ଦେଇଛନ୍ତି । ଆମ୍ଭେମାନେ ଏ ସମୟରେ ତାଙ୍କୁ ଉତ୍ସାହ ଦେବା ଆବଶ୍ୟକ । ଅନେକେ ସମାଲୋଚନାରେ ବିବ୍ରତ ହୋଇଥାନ୍ତି । ପତ୍ରିକାରେ । କ୍ରମଶଃ ।। ଶବ୍ଦଦେଖି ମୁଁ ଅଧିକତର ଆଶଙ୍କା କରୁଛି । ଆପଣ ଜ୍ଞାନବାନ୍, ମୋ କହିବାଟା ବାହୁଲ୍ୟମାତ୍ର । ଇତି

ଆପଣଙ୍କର ସଦ୍‌ଗୁଣ ମୁଗ୍ଧ

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ

(ଉଦ୍ଧୃତ : ବରପୁତ୍ର ୧୯୯୨, ଗାନ୍ଧୀସ୍ମୃତି ପାଠାଗାର, ବରଗଡ଼)

ଏହାର କିଛିଦିନ ପରେ କବି ଗଙ୍ଗାଧର ମଧ୍ୟ ଖଣ୍ଡିଏ ପୋଷ୍ଟକାର୍ଡ଼ରେ ସ୍ୱପ୍ନେଶ୍ୱରଙ୍କୁ ଲେଖିଥିଲେ:

ମାନ୍ୟାର୍ହ ମହୋଦୟ

*ମୁଁ ସମ୍ବଲପୁର ଯାଇଥିଲି । ଆପଣଙ୍କ ସହିତ ଦେଖା କରିବାକୁ ସଂକୁଚିତ ହୋଇଥିଲି କାରଣ ସେହି ସମୟରେ 'ଅର୍ଘ୍ୟଥାଳୀ' ର ସମାଲୋଚନା ଚାଲିଥିଲା ।*

ବିନୟାବନତ

ଶ୍ରୀ ଗଙ୍ଗାଧର ମେହେର

(ଉଦ୍ଧୃତ : ଗଙ୍ଗାଧର ଗ୍ରନ୍ଥାବଳୀ ୧୯୯୮, ଗ୍ରନ୍ଥମନ୍ଦିର,କଟକ-୨)

କବିଶେଖର ଚିନ୍ତାମହାନ୍ତି ମହାନ୍ତି ଓ ସାହିତ୍ୟିକ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଏହି ଚିଠିଦୁଇଟି ପାଠ କରିବା ପରେ କବି ସ୍ୱପ୍ନେଶ୍ୱର ଦାଶ, କବି ଗଙ୍ଗାଧର କିମ୍ବା ଗଙ୍ଗାଧରଙ୍କ ସମକାଳୀନ ଅନ୍ୟ କୌଣସି ଜୀବିତ ଲେଖକମାନଙ୍କ ଉପରେ ଆଉ କୌଣସି ସମାଲୋଚନାମୂଳକ ଲେଖା ଲେଖିନାହାନ୍ତି । ବୋଧହୁଏ ପ୍ରହରାଜଙ୍କ ଚିଠିରେ କବିଭୂଷଣ ସ୍ୱପ୍ନେଶ୍ୱର ମହାଶୟ ନୀରବ ହୋଇ ରହିଛନ୍ତି । କବି ସ୍ୱପ୍ନେଶ୍ୱର ଦାଶଙ୍କ ସହିତ କବି ଗଙ୍ଗାଧରଙ୍କ, ଏପରିକି ଗଙ୍ଗାଧରଙ୍କ ମୃତ୍ୟୁ ପର୍ଯ୍ୟନ୍ତ (ତା ୪.୪.୧୯୨୪) କୌଣସି ମନୋମାଳିନ୍ୟ ନଥିଲା, କିମ୍ବା ଓଡ଼ିଆ ସାହିତ୍ୟରେ ଏହା ଖୁବ୍ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ ନୁହେଁ । ତେବେ ସେହି ବିଷୟରେ ଏଠାରେ ଆଲୋଚନା କରିବା ଏହି ଲେଖାର ଉଦ୍ଦେଶ୍ୟ ନୁହେଁ । କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କ ଜୀବନ ଓ ପ୍ରତିଭା ଉପରେ ଉଚ୍ଚପ୍ରଶଂସା କରି ସ୍ୱଭାବ କବି ଗଙ୍ଗାଧର ମେହେର ଲେଖିଥିଲେ :

ମନ୍ତବ୍ୟ

*କବି ଓ ପଣ୍ଡିତ ଶ୍ରୀଯୁକ୍ତ ସ୍ୱପ୍ନେଶ୍ୱର ଦାଶ ମହାଶୟ ସମଗ୍ର ଉତ୍କଳରେ ସୁପରିଚିତ । ସେ ନିଜର କବିତ୍ୱ, ପାଣ୍ଡିତ୍ୟ ଓ ବକ୍ତୃତାର ମୋହିନୀ ଶକ୍ତିଦ୍ୱାରା ଏ*

*ଜିଲ୍ଲାର ବହୁ ଶିକ୍ଷିତ ବ୍ୟକ୍ତିଙ୍କର ଚିତ୍ତରଞ୍ଜନ କରି ପଦପଦକ ମାଳାରେ ସମ୍ମାନିତ ହୋଇଛନ୍ତି । ସମୟେ ସମୟେ ସମ୍ବାଦପତ୍ର ମାନଙ୍କରେ ଗୌଣଭାବରେ ପ୍ରବନ୍ଧାଦି ଲେଖୁଥିଲେ । ସୁଯୋଗକ୍ରମେ ସେ 'ଉତ୍କଳ-ସେବକ'ର ସଂପାଦକ ପଦ ଲାଭ କରି ଯେଉଁ କୃତିତ୍ୱ ଦେଖାଇ ଅଛନ୍ତି, ତଦ୍ୱାରା ତାଙ୍କର ତଥା 'ଉତ୍କଳ ସେବକ'ର ଏବଂ ସମ୍ବଲପୁରର ଗୌରବ ବୃଦ୍ଧି ହୋଇଥିବା ପ୍ରତୀୟମାନ ହୁଏ । କାରଣ ସେ ସମ୍ବଲପୁରର ସନ୍ତାନ । ଗଭର୍ଣ୍ଣମେଣ୍ଟଙ୍କଠାରେ ସମ୍ବଲପୁରବାସୀଙ୍କର ଯେ ସବୁ ନ୍ୟାୟ ଦାବୀ ଉପସ୍ଥାପିତ କରୁଅଛନ୍ତି । ତହିଁ ନିମନ୍ତେ ସେ ବିଶେଷ ଧନ୍ୟବାଦ ପାଇବାର ଯୋଗ୍ୟ ଅଟନ୍ତି ।*

ଶ୍ରୀ ଗଙ୍ଗାଧର ମେହେର

ପଦ୍ମପୁର
ତା ୧୫.୧୦.୧୯୧୮

(ଉଦ୍ଧୃତ : ଗଙ୍ଗାଧର ଗ୍ରନ୍ଥାବଳୀ ୧୯୯୮, ଗ୍ରନ୍ଥମନ୍ଦିର, କଟକ-୨)

ମେହେର କବିଙ୍କ ମୃତ୍ୟୁପରେ ତାଙ୍କୁ ଗଭୀର ଶ୍ରଦ୍ଧାଞ୍ଜଳି ଦେଇ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଯେଉଁ ଦୀର୍ଘ କବିତାଟି ଲେଖିଥିଲେ, ତାହା ପାଠକ-ପାଠିକାମାନଙ୍କ ଜାଣିବା ସକାଶେ ଏଠାରେ ପୂର୍ଣ୍ଣରୂପେ ଉଦ୍ଧାର କରାଗଲା । ସ୍ୱପ୍ନେଶ୍ୱର ଲେଖିଥିଲେ :

''କଲୌ ଚିତ୍ରୋତ୍ପଳା ଗଙ୍ଗା,
ଗଙ୍ଗାଧରଃ କବି ସ୍ତଥା ।
ଯସ୍ୟ କବିତା ଧାରାୟାଂ,
ପ୍ଲାବିତଂ ନିଖିଳୋତ୍କଳମ୍ ।।
କଲୌ ଗଙ୍ଗା ସ୍ୱରୂପିଣୀ,
ମହାନଦ୍ୟାସ୍ତୁ ଧାରୟା ।
କୃତ୍ୟା ଗଙ୍ଗାଧର ସ୍ୟାପି,
ପ୍ଲାବିତୋତ୍କଳ ଭୂରିୟଣ୍ ।।''

ଧନ୍ୟ କବିବର, ଧନ୍ୟ ଗଙ୍ଗାଧର,
ଧନ୍ୟା ବରପଲ୍ଲୀ ମହୀ ।
ଧନ୍ୟା ସେ ସେବତୀ, ସେ ଚୈତନ୍ୟତନ୍ତୀ,
ଧନ୍ୟ ତନ୍ତୀଜାତି ତହିଁ ।। ୧ ।।

ଉତ୍କଳ-ସାହିତ୍ୟ, ଗଗନେ ଆଦିତ୍ୟ,
ସ୍ୱରୂପେ ଲଭି ଜନମ ।
କାବ୍ୟ-କଳାକର, ବିଜ୍ଞ ଉତ୍କଳର,
ବିନାଶିଲ ଜାଡ୍ୟ-ତମ ।। ୨ ।।

ତବ ତପସ୍ୱିନୀ, କବିତା–ମୋହିନୀ,
ମୋହିଥିବ ରତ୍ନାକରେ ।
ସେ କୀଚକବଧ କରିଥିବ ସ୍ତବ୍ଧ,
ଶୂଦ୍ରମୁନି ପାରାଶରେ ।। ୩ ।।

ପ୍ରଣୟ–ବଲ୍ଲରୀ, କାଳିଦାସେ ବରି
ଥିବ ପୁଣି ଇନ୍ଦୁମତୀ ।
ସେ ଅଯୋଧ୍ୟାଦୃଶ୍ୟ, କରିଥିବ ମୃଷ୍ୟ
ଗୋସ୍ୱାମୀ ତୁଳସୀ ମତି ।। ୪ ।।

କବିତା–କଲ୍ଲୋଳ, କରିଥିବ ଭୋଳ,
କବିବର ରାଧାନାଥେ ।
ସୁଧର୍ମା ମଣ୍ଡପେ, ବସି ବାର୍ତ୍ତାଳାପେ,
ରାଓ ବାହାଦୂର ସାଥେ ।। ୫ ।।

ତବ ଅର୍ଘ୍ୟଥାଳୀ, ଘେନି ଅର୍ଘ୍ୟଥାଳୀ,
"ଉତ୍କଳ ସେବକ" କରେ ।
କରିଥିଲା ଜଣା ସାହିତ୍ୟେ କେବଣ
ଆଲୋଚନା ପ୍ରସଙ୍ଗରେ ।। ୬ ।।

ସେ ଅହଲ୍ୟାସ୍ତବ' x x x
ଭାରତୀ–ଭାବନା ପୁଣି ।
ଭକ୍ତି ଉପହାର, କରିଛନ୍ତି ହାର,
ମହିମା ସକଳ ଗୁଣୀ ।। ୭ ।।

ସେ ଉତ୍କଳଲକ୍ଷ୍ମୀ ବେଶଭୂଷା ଲକ୍ଷି
ପଣ୍ଡା ଶ୍ରୀ ବ୍ରଜମୋହନ ।
ଛାତ୍ର ଅବସ୍ଥାରେ, ସେ କଲିକତାରେ
କଲେ ତା' ଭାର ବହନ ।। ୮ ।।

ଅପୂର୍ବ ପଦ୍ମିନୀ ସଦାନନ୍ଦେ ପୁଣି
ଦେଇଥିବ ସଦାନନ୍ଦ ।
କବିତା–ମାଳାରେ, ଗ୍ରଥିତ ହେଳାରେ;
କେତେ ପୁଷ୍ପ ଭଲମନ୍ଦ ।। ୯ ।।

ତବ ରଚନାର,ଗଦ୍ୟ ନମୁନାର
ଚିତ୍ର ସେ ଗ୍ରନ୍ଥାବଳୀରେ ।
ରହିଛି ଯେ ଛବି, ଚିତ୍ରିଥିଲ କବି,
ତବ ଅମର ତୂଳୀରେ ।। ୧୦ ।।

ମୋ' ପତ୍ନୀ ରୋପିତ ଅଶ୍ୱତ୍ଥ ବର୍ଦ୍ଧିତ;
"ଗଙ୍ଗାଧରଦ୍ରୁମ" ନାମେ ।
ତବ ଦ୍ୱାଦଶାହ ଶ୍ରାଦ୍ଧ ସ୍ମୃତିପ୍ରାୟ,
ରହିଛି ମୋ'ବାସ ଧାମେ ।। ୧୧ ।।

ମୋ'ହସ୍ତ ଲିଖିତ ଯା' ଅପ୍ରକାଶିତ,
"ମୋର ଜୀବନୀ" ବୃତ୍ତାନ୍ତେ ।
ଭିନ୍ନ ଭିନ୍ନ ଛତ୍ରେ, ପ୍ରାୟ ଶତପତ୍ରେ,
ଚିହ୍ନିତ ତୁମ୍ଭେ ଏକାନ୍ତେ ।। ୧୨ ।।

ତବ ଆବିଷ୍କାର, ପଥ ପରିଷ୍କାର;
କରୁଛି ନିତି ତର୍ପଣ ।
ସୁରପୁରେ ଥାଇ, ଷଡ଼ କବିସାଇଁ
କରୁଥିବ ତ ଗ୍ରହଣ ? ।। ୧୩ ।।

ତବ କଲେଜର, ଛାତ୍ର ସମାଜର,
ପତ୍ର "ମେହେର ପ୍ରଦୀପ ।"
ଦେଖି ପାରୁଥିବ ତା' ଜ୍ୟୋତି–ଗୌରବ,
ଯାଏ କି ତବ ସମୀପ ? ।। ୧୪ ।।

ରଖିଛି ସମ୍ପାଦି ତବ ପତ୍ର ଆଦି
"ମୋର ଜୀବନୀ" ଖାତାରେ ।
ତବ ହସ୍ତାକ୍ଷର ରହିବ ଆଦର
ଚିର ଉତ୍କଳ ସଂସାରେ ।। ୧୫ ।।

ତବ ପତ୍ରାବଳୀ, ଦେଖିହୁଏ ଭାଳି
ତୁମ୍ଭେ ଚିହ୍ନିଥିଲ ମୋତେ ।
ତୁମ୍ଭେ ଗଲ ଛାଡ଼ି ମୁଁ ରହିଛି ପଡ଼ି,
ଅଗ୍ରାହକ ଦେଶେ ସତେ ।। ୧୬ ।।

ଉତ୍କଳ–ଭାରତୀ, ପୁଷ୍ପବାଟିକାରୁ
ମୋ’ ଏ କବିତା–ବାଟିକେ ।
ଗୋଟାଇ କେତୋଟି, ଶୁଖା ଝଡ଼ାଫୁଲ
ବାଢ଼ିଛି ଭୋଗ ଆଟିକେ ।। ୧୭ ।।
ରଖିଥିଲି କେତେ, କାଳୁଁ ଶ୍ରଦ୍ଧା କରି,
ମୋ’ ଜୀର୍ଣ୍ଣଜ୍ଞାନ–ପେଟିକେ ।
ଘେନ ଗୁଣଗ୍ରାହୀ ଦେବାତ୍ମା–ବିଗ୍ରହୀ
କୃପାବହି ଆଜିଟିକେ ।। ୧୮ ।।

ଶ୍ରୀ ସ୍ୱପ୍ନେଶ୍ୱର ଦାଶ କବିଭୂଷଣ
କବିକୁଟୀର, ବରଗଡ଼
ତା ୭.୮.୬୦

ପୂର୍ବପଦରେ କବି ସ୍ୱପ୍ନେଶ୍ୱର ଦାଶ ଲେଖିଛନ୍ତି :

‘‘ମୋ’ ପତ୍ନୀ ରୋପିତ ଅଶ୍ୱଥବର୍ଦ୍ଧିତ,
‘‘ଗଙ୍ଗାଧରଦ୍ରୁମ’’ ନାମେ ।
ତବ ଦ୍ୱାଦଶାହ, ଶ୍ରାଦ୍ଧ ସ୍ମୃତିପ୍ରାୟ,
ରହିଛି ମୋ’ ବାସ ଧାମେ ।।’’

ତା ୪.୪.୧୯୨୪ ମସିହା ‘ଚଇତ୍ର–ଅମାବାସ୍ୟା’ ଦିନ ଉତ୍କଳର ସ୍ୱଭାବ କବି ପୁଣ୍ୟାତ୍ମା ଗଙ୍ଗାଧର ମେହେର ସ୍ୱର୍ଗାରୋହଣ କରିଥିଲେ । କବିଙ୍କର ଦ୍ୱାଦଶାହ ଶ୍ରାଦ୍ଧଦିବସରେ କବିଙ୍କ ପତ୍ନୀ ଶ୍ରୀମତୀ ପଦ୍ମାବତୀ ଦେବୀ ଗୋଟିଏ ପିପ୍‌ପଲ ବୃକ୍ଷ ରୋପଣ କରି ଗଙ୍ଗାଧରଙ୍କୁ ଶ୍ରଦ୍ଧା ନିବେଦନ କରିଥିଲେ । ପରେ ସେଠାରେ ଏକ ‘ସ୍ୱରାଜ୍ୟ କାନନ’ ସୃଷ୍ଟି କରିଥିଲେ ।

‘‘ରଖିଛି ସଂପାଦି ତବ ପତ୍ର ଆଦି
‘‘ମୋର ଜୀବନୀ’’ ଖାତାରେ ।
ତବ ହସ୍ତାକ୍ଷର ରହିବ ଆଦର
ଚିର ଉତ୍କଳ ସଂସାରେ ।। ୧୫ ।।’’

ସ୍ୱପ୍ନେଶ୍ୱରଙ୍କ ଦୃଷ୍ଟିରେ ଗଙ୍ଗାଧର ପ୍ରକୃତରେ କ’ଣ ଥିଲେ ତାହା ଏହି କବିତାରୁ ସ୍ପଷ୍ଟ ଜଣାପଡ଼େ । ଏହି କବିତାରେ ସେ ଭକ୍ତର ଦୃଷ୍ଟି ଦେଇ ଗଙ୍ଗାଧରଙ୍କୁ ଦେଖିଛନ୍ତି । କୌଣସିଠାରେ ଥିଲେ ସୁଦ୍ଧା ଅନ୍ଧସ୍ତୋବକତା କରି ନାହାନ୍ତି । ଗଙ୍ଗାଧର ମଧ୍ୟ ସ୍ୱପ୍ନେଶ୍ୱରଙ୍କୁ ଅତି ଆପଣାର କରିନେଇଥିଲେ । ଉଭୟେ ଉଭୟଙ୍କୁ ବହୁପତ୍ର ଲେଖିଛନ୍ତି । ସ୍ୱଭାବ କବି ଗଙ୍ଗାଧର ପଦ୍ମପୁରରେ ଥିବା ସମୟରେ ସ୍ୱପ୍ନେଶ୍ୱରଙ୍କୁ ଲେଖିଥିଲେ :

ପଦ୍ମପୁର
ତା ୬.୭.୧୯୧୫

ପରମ ମାନନୀୟ ପଣ୍ଡିତ ଶ୍ରୀମାନ୍ ସ୍ୱପ୍ନେଶ୍ୱର ଦାଶ
ବାଗ୍ମୀବର ମହୋଦୟେଷୁ !
ପ୍ରଣତି ପୁରଃସର ସବିନୟ ନିବେଦନ ମିଦଂ–
ମହାଶୟ,

*ଆପଣଙ୍କର ୧.୭.୧୯୧୫ ଇସବୀ ଲିଖିତ ପତ୍ର ପାଠକରି ଅତ୍ୟନ୍ତ ଭାବନାଯୁକ୍ତ ହୋଇଅଛି । ଏଠାରେ ଅନେକ ପୁରାତନ କର୍ମଚାରୀ କର୍ମଚ୍ୟୁତ ହୋଇଅଛନ୍ତି । ଜମିଦାର ସାହେବ କିପରି ନୂତନ ବନ୍ଦୋବସ୍ତ କରିବେ, ତାହା ଜଣାପଡୁ ନାହିଁ । ତେବେ ନୂତନ ମଧ୍ୟରେ ଶ୍ରୀମାନ ଅଇଁଠା ପତି ମହାଶୟ ଜଣେ ପ୍ରଧାନ କର୍ମଚାରୀ ରୂପେ ଗଣ୍ୟ ହୋଇଅଛନ୍ତି । ଅନ୍ୟାନ୍ୟ କର୍ମଚାରୀଙ୍କର ସ୍ଥାନ ପୂରଣ କରିବାରେ ମଧ୍ୟ ତାଙ୍କର ଅଭିମତ ଆବଶ୍ୟକ ହେବ ବୋଲି ବୋଧହୁଏ । ଆପଣ ତ ଜମିଦାର ସାହେବଙ୍କ ନିକଟକୁ ଅର୍ଜୀ ପଠାଇ ଅଛନ୍ତି । ତିନିଦିନ ହେଲା ସେ ଗସ୍ତ ଯାଇଅଛନ୍ତି । ଫେରିଲେ ଆପଣଙ୍କ ବିଷୟ ଜଣାଇବି । ଏବଂ ଯଥାସାଧ୍ୟ ଚେଷ୍ଟା କରି ଆପଣଙ୍କ କାର୍ଯ୍ୟସିଦ୍ଧି ସମ୍ବନ୍ଧେ କିଛି କରିପାରିଲେ ନିଜକୁ କୃତାର୍ଥ ମଣିବି ।*

*ଆପଣ ଯଦି କଷ୍ଟ ସହ୍ୟ କରି ଥରେ ଆସିପାରନ୍ତେ ତେବେ କିଛି ନା କିଛି ଉପକାର ହୋଇପାରନ୍ତା ବୋଲି ମୁଁ ବୋଧକରେଁ । ଇତି*

ଭବଦ୍ କୃପାକାଙ୍କ୍ଷୀ
ଶ୍ରୀ ଗଙ୍ଗାଧର ମେହେର

## କବିଙ୍କ କରୁଣ ମହାପ୍ରୟାଣ :

ତା ୨୫.୩. ୧୯୫୫ ମସିହାରେ କବିପତ୍ନୀ ପଦ୍ମାବତୀ ଦେବୀଙ୍କ ପରଲୋକ ହେବାପରେ କବି ସ୍ୱପ୍ନେଶ୍ୱର ସାନପୁଅ ଅନିରୁଦ୍ଧ ଦାଶଙ୍କ ସହିତ ୧୯୫୫ ରୁ ୧୯୬୦ ମସିହାପର୍ଯ୍ୟନ୍ତ କଟକ–ଭୁବନେଶ୍ୱରଠାରେ ଅବସ୍ଥାନ କରୁଥିଲେ । ସମ୍ଭବତଃ ୧୯୬୦ ମସିହା ଶେଷଆଡ଼କୁ ବରଗଡ଼ ଫେରିଆସି ସେଠାରେ ଅବସ୍ଥାନ କରୁଥିଲେ । ଏପରି ସୁଖଦୁଃଖରେ ଦୁଇବର୍ଷ ବିତିଯିବା ପରେ ତା ୩.୬.୧୯୬୨ ମସିହାରେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କ ପରଲୋକ ହୋଇଯାଇଛି । କବିକୁଟୀର, ବରଗଡ଼ଠାରେ । କବି ସ୍ୱପ୍ନେଶ୍ୱରଙ୍କ ବିୟୋଗ ଜନିତ ସମ୍ବାଦ ଉତ୍କଳର ଅନେକ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ସେଥିମଧ୍ୟରୁ 'ଝଙ୍କାର' ପତ୍ରିକାରେ ପ୍ରକାଶିତ ସମ୍ବାଦଟି ବହୁ ଗୁରୁତ୍ୱପୂର୍ଣ୍ଣ । 'ଝଙ୍କାର' ପତ୍ରିକାର ସଂପାଦକ ମହାଶୟ ଗଭୀର ଦୁଃଖ ପ୍ରକାଶ କରି ଲେଖିଥିଲେ :

## ସ୍ୱର୍ଗତ ସ୍ୱପ୍ନେଶ୍ୱର

ଇତି ମଧ୍ୟରେ ପଣ୍ଡିତ ସ୍ୱପ୍ନେଶ୍ୱର ଦାଶ କବିଭୂଷଣ xxx ଙ୍କର ପରଲୋକ ହୋଇଯାଇଛି । ପ୍ରବୀଣ ବୟୋଜ୍ୟେଷ୍ଠ ସ୍ୱର୍ଗତ ସ୍ୱପ୍ନେଶ୍ୱର ଦାଶ ଏକାଧାରରେ ପଣ୍ଡିତ, କବି, ସଂପାଦକ ଓ ଆଜୀବନ ସାହିତ୍ୟସାଧକ ଥିଲେ । ସମ୍ବଲପୁର ଜିଲ୍ଲା ବରଗଡ଼ରେ ସେ ଗତ ଶତାବ୍ଦୀର ଶେଷାର୍ଦ୍ଧ (୧୮୭୫;ପ୍ରକୃତରେ ୧୮୭୬) ରେ ଜନ୍ମଗ୍ରହଣ କରି ଦୀର୍ଘ ୮୭ ବର୍ଷକାଳ ଦେଶ ଓ ସାହିତ୍ୟ ସେବାରେ ନିଜକୁ ନିୟୋଜିତ କରିଥିଲେ । ପ୍ରକୃତି କବି ଗଙ୍ଗାଧରଙ୍କ ସେ ଥିଲେ ସମସାମୟିକ ଓ ଜଣେ ପରମ ସାହିତ୍ୟିକ ବନ୍ଧୁ । ଜାତୀୟ କଂଗ୍ରେସ ପ୍ରତିଷ୍ଠାର ଦଶବର୍ଷ ପୂର୍ବରୁ ସରକାରୀ ଚାପ ଓ ଚକ୍ରାନ୍ତରେ ଯେତେବେଳେ ଏହି ଓଡ଼ିଆ ଭାଷା ଏକାବେଳକେ ବିଲୁପ୍ତ ହେବାକୁ ଯାଉଥିଲା; ଠିକ୍ ସେତିକିବେଳେ ଏହି ସାହିତ୍ୟରଥୀମାନେ ନିଜର ଅତୁଳପ୍ରତିଭା ଓ ଅଦମ୍ୟ ସାଧନା ଫଳରେ ଆମର ଭାଷା ଓ ସାହିତ୍ୟକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରି ପାରିଥିଲେ । ତାଙ୍କର ଦୀର୍ଘ ଜୀବନକାଳ ଭିତରେ ସେ 'ତୁଳସୀ ରାମାୟଣ' ଓ 'କାମାୟନୀ' କୁ ଅନୁବାଦ କରିଥିଲେ ଓ 'ମାସଚିତ୍ର' 'କୋଷାଙ୍କୁର', 'ସମ୍ବଲ–ମନସା', 'ପ୍ରବଚନ ତରଙ୍ଗ' ଓ 'କବିତା ଝଟିକା' ଇତ୍ୟାଦି ନିଜେ ପ୍ରଣୟନ କରିଥିଲେ । ତାଙ୍କର 'ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ'ର ପଦ୍ୟାନୁବାଦ ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶିତ ହେବାକୁ ଯାଉଛି । କେବଳ କାବ୍ୟ କବିତା ନୁହେଁ, ବ୍ୟାକରଣ ଓ ବୈଦ୍ୟଶାସ୍ତ୍ରରେ ମଧ୍ୟ ତାଙ୍କର ଅଗାଧ ପାଣ୍ଡିତ୍ୟ ରହିଥିଲା । ସେ ନିଜେ 'ବ୍ୟାକରଣସ୍ତବ' ଓ 'ବୈଦ୍ୟକଳ୍ପଦ୍ରୁମ' ନାମକ ଦୁଇଖଣ୍ଡ ବହି ଲେଖିଯାଇଛନ୍ତି । ସାଢ଼େ ତିନିହଜାର ପୃଷ୍ଠାବ୍ୟାପୀ ସେ ତାଙ୍କର ଆତ୍ମଚରିତ ଲେଖି ଯାଇଛନ୍ତି । ଏହି ଆତ୍ମଚରିତରେ ସେ ସମୟର ଓଡ଼ିଶାର ବହୁ ସମସାମୟିକ ଘଟଣାବଳୀ ସ୍ଥାନ ପାଇପାରିଛି । ସ୍ୱର୍ଗତ ସ୍ୱପ୍ନେଶ୍ୱର କେବଳ କବି, ପଣ୍ଡିତ ଓ ସାହିତ୍ୟିକ ନଥିଲେ, ଜଣେ ସୁଯୋଗ୍ୟ ସମ୍ପାଦକ ଭାବରେ ତାଙ୍କର ଖ୍ୟାତି ଥିଲା । ସେ 'ହୀରାଖଣ୍ଡ' ମାସିକ ପତ୍ରିକା 'ଉତ୍କଳ ସେବକ' ଓ 'ସାଧନା'ର ସଂପାଦକ ଥିଲେ । ତାଙ୍କର ଆଜୀବନ ସାହିତ୍ୟ ସାଧନା ଫଳରେ 'କବି ଭୂଷଣ' ଉପାଧି ଲାଭ କରିଥିଲେ ଓ ମୃତ୍ୟୁର ଅଳ୍ପକାଳ ପୂର୍ବରୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଥିଲେ ।

ପଣ୍ଡିତ ସ୍ୱପ୍ନେଶ୍ୱର ଦାଶ 'କବିଭୂଷଣ'ଙ୍କ ବିୟୋଗରେ ଓଡ଼ିଶା ଜଣେ ପ୍ରବୀଣ ବୟୋଜ୍ୟେଷ୍ଠ ଓ ନିଷ୍ଠାପର ସାହିତ୍ୟ ସାଧକଙ୍କୁ ହରାଇ ବସିଛି, ଏଥିରେ ଦ୍ୱିମତ ନାହିଁ । ତାଙ୍କର ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରିବା ସଂଗେ ସଂଗେ ଆମେ ତାଙ୍କର ପରିବାରବର୍ଗଙ୍କୁ ସମବେଦନା ଜଣାଉଛୁ ।

ସଂପାଦକୀୟ ସ୍ତମ୍ଭ : ସତ୍ୟାନନ୍ଦ ଚମ୍ପତିରାୟ

(ଝଙ୍କାର ୧୪/୩ : ଜୁନ୍ ୧୯୬୨ : ପୃଷ୍ଠା–୩୭୧

## ଦ୍ୱିତୀୟ ଅଧ୍ୟାୟ

# କବି ସ୍ୱପ୍ନେଶ୍ୱର ଦାଶ

କବି ଓ କବିତା ମଧ୍ୟରେ ଏକ ଉତ୍ତମ ଓ ପବିତ୍ର ସଂପର୍କ ରହିଛି । ଯେପରିକି ଧର୍ମ ଓ ଧରଣୀ, ପ୍ରଦୀପ ଓ ଶିଖା, ସାଗର ଆଉ ଉର୍ମି ପରି । କବି ପ୍ରତିଭା ହେଉଛି ସ୍ୱାଭାବିକ ଓ ଈଶ୍ୱର ପ୍ରଦତ୍ତ । ଯେଉଁ କବିର କବିତାରେ ଆତ୍ମ ଅନ୍ୱେଷା ଓ ଜୀବନ ଜିଜ୍ଞାସର ସ୍ପଷ୍ଟଚିତ୍ର ପ୍ରତିଭାତ ହୁଏ, ସେ କବିର କବିତା ଜନ ସମାଜରେ ସେତିକି ପଠିତ ଓ ଆଲୋଚିତ ହୁଏ । ସେ କବି ହୋଇଯାଏ ଚିରପୂଜ୍ୟ, ଚିର ନମସ୍ୟ ଓ ଚିରବନ୍ଦ୍ୟ । ଆଧୁନିକ ଓଡ଼ିଆ ସାହିତ୍ୟରେ ବ୍ୟାସକବି ଫକୀରମୋହନ–କବିବର ରାଧାନାଥ–ଭକ୍ତକବି ମଧୁସୂଦନ–ସ୍ୱଭାବକବି ଗଙ୍ଗାଧର–ପଲ୍ଲୀକବି ନନ୍ଦକିଶୋରଙ୍କ ପରବର୍ତ୍ତୀ ସମସାମୟିକ କବି ହେଉଛନ୍ତି ସ୍ୱପ୍ନେଶ୍ୱର ଦାଶ । ସ୍ୱପ୍ନେଶ୍ୱର ଦାଶ ମୁଖ୍ୟତଃ ଜଣେ କବି । ସେ କିନ୍ତୁ କେତେଖଣ୍ଡ ଦୀର୍ଘ କାବ୍ୟଗ୍ରନ୍ଥ ଲେଖିଛନ୍ତି । ତାଙ୍କ ରଚିତ ପ୍ରାୟ ସମସ୍ତ ହେଉଛି ମୁଖ୍ୟତଃ କବିତା ସଂକଳନ । ପୂର୍ବରୁ ଏହି କବିତାଗୁଡ଼ିକ କେତେକାଂଶରେ ଉତ୍କଳର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଲୋକପ୍ରିୟ ହୋଇ ପାରିଥିଲା । ତାଙ୍କ ରଚିତ କବିତାଗ୍ରନ୍ଥ ଗୁଡ଼ିକ ହେଉଛି : (୧) ସମ୍ବଳମନସା (୨) କୃତଜ୍ଞତା ପୁଷ୍ପାଞ୍ଜଳି (୩) ଅନ୍ତ୍ୟେଷ୍ଟି ଯାଗ (୪) କବିତା ଝଟିକା (୫) କବିତା ପେଟିକା (୬) କବିତା–କୁଝଟିକା (୭) କାମାୟନୀ (୮) ଆସୁଁ ବା ଅଶ୍ରୁ (୯) ଗାନ୍ଧୀବୋଲି ଇତ୍ୟାଦି । ଏହା ବାହାରେ କବି ସ୍ୱପ୍ନେଶ୍ୱରଙ୍କ ବହୁ ପ୍ରକାଶିତ କବିତା ବହି ରହିଛି । ଯାହା ସଂପ୍ରତି ଦୁଷ୍ପ୍ରାପ୍ୟ । (ରମ୍ଭେଳା ଚିତ୍ରାବଳୀ, ଅଭିଷେକୋତ୍ସବ, ଶ୍ରୀରାମଚନ୍ଦ୍ର ଜଣାଣ, ଜାତୀୟ ସଂଗୀତ, ମାସଚିତ୍ର, କରମା ଏକାଦଶୀ ମଧ୍ୟ । କବିଙ୍କ ଲିଖିତ ଓ ପ୍ରକାଶିତ ଯେଉଁ କବିତା ବହି ଗୁଡ଼ିକ ଏହି ଆଲୋଚକ ନିଜେ ଦେଖିବାର ସୁଯୋଗ ପାଇଛି, ସେଗୁଡ଼ିକ ଉପରେ ହିଁ ଏହି ଆଲୋଚନା ପ୍ରବନ୍ଧଟି ପ୍ରସ୍ତୁତ କରିଛି । ସେତିକି ତଥ୍ୟ ଅବା ଉପାଦାନ ଉପରେ ନିର୍ଭର କରି ଏହି ଲେଖାଟି ଲେଖିଛି ।

### (୧) ମାସଚିତ୍ର : (୧୯୧୧)

୧୯୧୦ ମସିହାରେ କବି ସ୍ୱପ୍ନେଶ୍ୱର 'ଗ୍ରୀଷ୍ମବକାଶ' ଓ 'ମାସଚିତ୍ର' ନାମରେ ଦୁଇଟି ସ୍ୱତନ୍ତ୍ର ପୁସ୍ତକ ରଚନା କରିଥିଲେ । 'ମାସଚିତ୍ର' ପୁସ୍ତକଟି ୧୯୧୧ ମସିହାରେ ପ୍ରକାଶିତ ହୋଇଥିବାବେଳେ 'ଗ୍ରୀଷ୍ମବକାଶ' ପୁସ୍ତକଟିର କୌଣସି ସୂଚନା ମିଳୁ

ନଥିବାରୁ ତାହା ପ୍ରକାଶିତ ହୋଇଛି କି ନାହିଁ ବର୍ତ୍ତମାନ କହିବା ସମ୍ଭବ ନୁହେଁ । 'ମାସଚିତ୍ର' ପୁସ୍ତକରେ ବାରମାସର ବୈଶିଷ୍ଟ୍ୟ ବର୍ଣ୍ଣିତ ହୋଇଥିବା ସମ୍ଭବପର । ମୁଦ୍ରିତ 'ମାସଚିତ୍ର' ପୁସ୍ତକ ଖଣ୍ଡିକ ବର୍ତ୍ତମାନ ଉପଲବ୍ଧ ନୁହେଁ; ତେଣୁ ସେ ବିଷୟରେ କିଛି ଆଲୋଚନା କରାଯାଇ ପାରୁନାହିଁ । ବହୁ ଅନୁସନ୍ଧାନ ପରେ କବିଙ୍କ ଗୃହରୁ 'ମାସଚିତ୍ର' ପୁସ୍ତକର ଖଣ୍ଡେ ପୁରୁଣା ପାଣ୍ଡୁଲିପିର ଦୁଇଟି ପୃଷ୍ଠା ଦେଖିବାକୁ ମିଳିଥିଲା । ପାଠକ-ପାଠିକା ମାନଙ୍କ ଜାଣିବା ପାଇଁ ତାହା ଏଠାରେ ଉଦ୍ଧାର କରାଗଲା :

ଜ୍ୟେଷ୍ଠମାସ

(ରାଗ-ରସକୁଲ୍ୟାବୃତ୍ତେ)

(୧୬)

"ସାବିତ୍ରୀ ଅମାସ୍ୟା ପବିତ୍ର ପର୍ବ,
ସତୀ ସାବିତ୍ରୀଙ୍କ ଏ ମହୋତ୍ସବ,
ପତିଙ୍କ ମଙ୍ଗଳ ମନାସି ମନେ,
ଆଚରନ୍ତି ବ୍ରତ ନାରୀ ରତନେ ଯେ,
ଧନ୍ୟ ମା' ସାବିତ୍ରୀ ସତୀ,
ଏ ଭାରତ ଭୂମେ ଥିଲୁ ଅବତରୀ,
ଆଜି ଅଛି ତୋ' କୀରତି ଯେ ।

(୧୭)

ପତିପ୍ରାଣା ବିଶ୍ୱେ କେ ତବ ସମ,
କେ' ଆଚରିବ ତୋ' ସମ ସଂଯମ,
ବେନିକୁଳ ମାତ ନେଲୁ ଉଦ୍ଧାରି,
ତେଣୁ ତୋର ନାମ ସ୍ମରନ୍ତି ନାରୀ ଯେ
ତୋ' ସୁତାଙ୍କ ଦଶାଥରେ
ନ ଦେଖୁଛୁ ମାତ କି ଥିଲେ କି ହେଲେ,
କୁସଂସ୍କାର ଶାସନରେ ଯେ ।

(୧୮)

କାଠ ପୁତ୍ତଳିକା ପ୍ରାୟେ ମହିଳା,
ଗୃହକୋଣେ ଆଜି କରନ୍ତି ଲୀଳା,
ଚିରବନ୍ଦିନୀ ସେ ଶିକ୍ଷାବିହୀନା,
ଅକର୍ମଶିଳା ସେ ପୁର ଅଧୀନା ଯେ,
କଳ ହରଣ ଦୁଃଶୀଳା• ଯେ,

ତୁ ଦେଖିଲାବେଳେ ଗୋ ସତୀ ସାବିତ୍ରୀ,
ଏ ଅବସ୍ଥା ନିକି ଥିଲା ? ।

(୧୯)

ଆଜି ସ୍ୱାଧୀନତାଆସିଛି ଫେରି,
ବଜାଉଥିଲି ମୁଁ ଆଗେ ନାଫେରୀ,
ସଂଗେ ନେଉଥିଲି ମୁଁ ଯେବେ ନାରୀ,
ଆଦର୍ଶ ନଥିଲା ତେବେ କାହାରି ଯେ,
କ୍ରମେ କ୍ରମେ କୁସଂସ୍କାର,
ଶିକ୍ଷା ସୂର୍ଯ୍ୟୋଦୟେ ହେଉଅଛି କ୍ଷୟେ,
ଆଉ ନାହିଁ ଅବିଚାର ।''

କବି ଏହାର ଫୁଟ୍‌ନୋଟ୍‌ରେ ଦେଇଛନ୍ତି ଯେ, ୧୯ତମ ପଦଟି 'ମାସଚିତ୍ର ' ପୁସ୍ତକରେ ନାହିଁ । ଏହି ୧୯ତମ ପଦଟିକୁ କବି ତା ୧୪.୫.୧୯୬୧ ମସିହାର ସାବିତ୍ରୀ ଅମାବାସ୍ୟା ପର୍ବ ପାଇଁ ଲେଖିଥିଲେ । ଅର୍ଥାତ୍ ୫୦ ବର୍ଷ ପରେ ଏହି ପଦଟି ଲେଖିଥିଲେ ।

କାର୍ତ୍ତିକ ମାସ

(ରାଗ–ଏକାନ୍ତର ମିତ୍ରାକ୍ଷର)

ଏହି ରୂପେ ପୂର୍ଣ୍ଣହେଲା କାର୍ତ୍ତିକ ପୌର୍ଣ୍ଣମୀ,
ମହୀର ବାର୍ଷିକ ଗତିପୂର୍ଣ୍ଣ ହେଲାଥରେ,
ପୃଥିବୀ ଚକ୍ର ଆସିଲା ସୂର୍ଯ୍ୟେ ପରିକ୍ରମି,
ଯଶ ଅପଯଶ ବେନି ଘେନି ପୃଷ୍ଠପରେ ।

ଅନନ୍ତ ବିଶ୍ୱନିୟନ୍ତା ନିତ୍ୟ ସନାତନ,
କେ ବୁଝିପାରିବ ତାଙ୍କ ମହିମା ଅନନ୍ତ,
କରୁଛନ୍ତି ଏହିରୂପେ ମହା ଆବର୍ତ୍ତନ,
କି ଉଦ୍ଦେଶ୍ୟେ ? କେ ଜାଣିବ ତାହାଙ୍କ ଉଦନ୍ତ ।

ପ୍ରକାଣ୍ଡ ଜଗତ ତାଙ୍କ ଆଜ୍ଞା ଅନୁସରି,
ନଟ ପୁତ୍ତଳିକା ପରି କରୁଛି ନର୍ତ୍ତନ,
କେ ଜାଣିବ ତାଙ୍କ ମନ ନରତନୁ ଧରି,
ଲାଗିଛି ବିଶ୍ୱର ନିତ୍ୟ ଉତ୍ଥାନ ପତନ ।

କ୍ଷୁଦ୍ର ନରପ୍ରତି ହୋଇ ଦୟା ପରାୟଣ,
ନାନା ସୁବିଧା ସୁଯୋଗ ଦେଇଛନ୍ତି ହରି,
କୃତଘ୍ନ ମାନବ କିନ୍ତୁ ନ କରେ ସ୍ମରଣ,
ଜ୍ଞାନ କରେ ବିଦ୍ୟାବଳେ ବିଶ୍ୱେ ଅଛି ଧରି ।

କି ଛାର ମାନବ ତହୁଁ କି ତୋର ଶକତି,
ନ ଭାବୁଛୁ ତୋର ପରି କେତେ କୋଟି ପ୍ରାଣୀ,
ଜଳ ବୁଦ୍‌ବୁଦ୍ ସମାନ ଗଲେ କେଉଁ କତି,
'ମୁଁ ବଡ଼ ମୁଁ ବଡ଼' ବୋଲୁ ହାୟ ଜାଣି ଜାଣି ।

ତୁ ବି ବଡ଼ ତୋର ଠାରୁ କେତେ ବଡ଼ ଗଲେ,
ଧରାକୁ ଯେ ସରା ବୋଲି କରୁଥିଲେ ଜ୍ଞାନ,
କ୍ଷଣ ସୁଖ ପାଇଁ କେତେ ଅଭିନୟ କଲେ,
ଚାହୁଁ ଚାହୁଁ କାଳସ୍ରୋତେ ହେଲେ ଭାସମାନ ।

ସମାପ୍ତ

*କବି ସ୍ୱପ୍ନେଶ୍ୱର 'ମାସଚିତ୍ର' ପୁସ୍ତକର ପାଣ୍ଡୁଲିପି ପ୍ରଥମେ ପଲ୍ଲୀକବି ନନ୍ଦକିଶୋର ବଳଙ୍କ ପାଖକୁ ପଠାଇଥିଲେ । ପଲ୍ଲୀକବି ତାହା ପାଠକରି ଖଣ୍ଡିଏ ଚିଠିରେ କବି ସ୍ୱପ୍ନେଶ୍ୱରଙ୍କୁ ଲେଖିଥିଲେ :*

*ପଣ୍ଡିତ ସ୍ୱପ୍ନେଶ୍ୱର ଦାଶ ଶର୍ମା ମହାଶୟଙ୍କ ବିରଚିତ 'ମାସଚିତ୍ର' ନାମକ ବର୍ଣ୍ଣନାତ୍ମକ ପାଣ୍ଡୁଲେଖ୍ୟର ଅଧିକାଂଶ ମୁଁ ପାଠକରି ପରିତୋଷ ଲାଭ କରିଅଛି । କବିଙ୍କର ରଚନାର ଭାଷାପ୍ରାୟ ସର୍ବତ୍ର ବ୍ୟାକରଣ ଦୋଷଶୂନ୍ୟ, ସହଜ, ସରଳ, ମାର୍ଜିତ ଓ ପ୍ରାଞ୍ଜଳ । ତାଙ୍କର ସ୍ୱଭାବ–ଶୋଭା–ସନ୍ଦର୍ଶନ–ଶକ୍ତି ବାସ୍ତବ ପ୍ରଶଂସାର୍ହ । ମୋର କ୍ଷୁଦ୍ର ମତିରେ ସ୍ୱପ୍ନେଶ୍ୱର ବାବୁ ସମ୍ବଲପୁରର ଅନ୍ୟତର ସ୍ୱଭାବକବି ।*

ତା ୨୯.୮.୧୯୧୦

ଡଗରପଡ଼ା, କଟକ — ଶ୍ରୀ ନନ୍ଦକିଶୋର ବଳ

*ପଲ୍ଲୀକବି ନନ୍ଦକିଶୋର ବଳ 'ମାସଚିତ୍ର' କାବ୍ୟରେ ମୁଗ୍ଧ ଓ ପ୍ରୀତ ହୋଇ ସ୍ୱପ୍ନେଶ୍ୱରଙ୍କୁ ସମ୍ବଲପୁରର ଅନ୍ୟତର ସ୍ୱଭାବକବି କହିବା କ'ଣ କମ୍ ଗୌରବର କଥା । 'ମାସଚିତ୍ର'ର ମୁଦ୍ରିତ ପୁସ୍ତକ ମଧ୍ୟ ସ୍ୱପ୍ନେଶ୍ୱର–କବି ବ୍ରଜମୋହନ ପଣ୍ଡାଙ୍କ ପାଖକୁ ପଠାଇଛନ୍ତି । ପୁସ୍ତକ ପ୍ରାପ୍ତିପରେ ଏ ସଂପର୍କରେ କବି ଗଙ୍ଗାଧରଙ୍କୁ କବି ବ୍ରଜମୋହନ ପଣ୍ଡା ଜଣାଇଛନ୍ତି । ବ୍ରଜମୋହନ ପଣ୍ଡାଙ୍କ ପତ୍ରରୁ 'ମାସଚିତ୍ର' ପ୍ରକାଶିତ*

*ହୋଇଥିବା ସମ୍ବାଦ ଅବଗତ ହୋଇ ଗଙ୍ଗାଧର ମଧ୍ୟ ଆନନ୍ଦିତ ହୋଇ ତା ୨.୯.୧୯୧୧ ର ଚିଠିରେ କବି ବ୍ରଜମୋହନଙ୍କୁ ଲେଖିଛନ୍ତି :*

ପ୍ରଣତି ପୁରଃସର ସବିନୟ ନିବେଦନମିଦଂ

ସମ୍ବଲପୁର

ତା ୨.୯.୧୧

ପ୍ରିୟତମ ମହୋଦୟ,

x x x

ଶ୍ରୀ ସ୍ୱପ୍ନେଶ୍ୱର ଦାଶ ଆପଣଙ୍କୁ ପ୍ରଶଂସା କରି "ମାସଚିତ୍ର" ଉପହାର ପଠାଇଥିବା ସମ୍ବାଦରେ ଆନନ୍ଦିତ ହେଲି । ଏଥିରୁ ତାଙ୍କର ସାଧୁତା ପ୍ରଶଂସନୀୟ ।

x x x

ଆପଣଙ୍କର କୁଶଳ ସମ୍ବାଦରେ ସୁଖୀ ହୋଇଅଛି । ମୁଁ ମଧ୍ୟ କୁଶଳ ।

ଆପଣଙ୍କର

ଶ୍ରୀ ଗଙ୍ଗାଧର

କବି ବ୍ରଜମୋହନ ପଣ୍ଡାଙ୍କୁ ଲିଖିତ ଗଙ୍ଗାଧରଙ୍କ ଏହି ପତ୍ରର ସପ୍ତାହକ ପରେ 'ମାସଚିତ୍ର'ର ଏକ ପୁସ୍ତକ ସମୀକ୍ଷା "ସମ୍ବଲପୁର ହିତୈଷିଣୀ'ର ୨୨/୪୮ ସଂଖ୍ୟାରେ ଦେଖିବାକୁ ମିଳେ । ହିତୈଷିଣୀରେ ପ୍ରକାଶିତ ହୋଇଥିବା ସମାଲୋଚନାଟି ଥିଲା :

## ମାସଚିତ୍ର

*"ସମ୍ବଲପୁରର ଅନ୍ୟତମ କବି ପଣ୍ଡିତ ଶ୍ରୀଯୁକ୍ତ ସ୍ୱପ୍ନେଶ୍ୱର ଦାଶ କବିଭୂଷଣଙ୍କ ଦ୍ୱାରା ନାନା ରାଗ–ରାଗିଣୀରେ ବିରଚିତ ଓ ପ୍ରକାଶିତ । ଡିମାଇ ୧୨ ପେଜି, ୮୯ ପୃଷ୍ଠା; ଛାପା ସୁନ୍ଦର ଓ ମୂଲ୍ୟ ୮୦ । ଅଣାମାତ୍ର । ଆମ୍ଭେମାନେ ଉକ୍ତ ପୁସ୍ତକରୁ ଖଣ୍ଡିଏ ଉପହାର ପାଇ କୃତଜ୍ଞତା ସ୍ୱୀକାର କରୁଅଛୁଁ । ପୁସ୍ତକ ଖଣ୍ଡିକ ପାଠକରି ଆନନ୍ଦିତ ହେଲୁ । ଏହାକୁ "ଗୃହଚିତ୍ର" ବୋଇଲେ ଅସୁନ୍ଦର ହେବ ନାହିଁ । ଗୃହସ୍ଥ ପରିବାରର ପରସ୍ପର ସମ୍ବନ୍ଧ, ସ୍ନେହବନ୍ଧନ, ବ୍ୟବହାର, ପ୍ରତିମାସର କାଳୋଚିତ ବ୍ରତାନୁଷ୍ଠାନାଦି ସବିସ୍ତାରେ ବର୍ଣ୍ଣିତ ହୋଇଅଛି । ଏ ବିଷୟରେ କବି ଯେଉଁ କୃତିତ୍ୱ ଦେଖାଇ ଅଛନ୍ତି, ଅଳ୍ପ ପ୍ରଶଂସାର କଥା ନୁହେ । ସ୍ଥାନେ ସ୍ଥାନେ କବିଙ୍କର ବିଶେଷ ପ୍ରତିଭା ପରିସ୍ଫୁଟ ହୋଇଅଛି । କେତେକ ସ୍ଥଳରେ ଗ୍ରାମ୍ୟତା ଦୋଷଥିବାର ଦେଖାଯାଏ କିନ୍ତୁ ଗୃହଚିତ୍ରରେ ଏହା ସର୍ବତ୍ର ସୁଲଭ ଥିବା ଓ ତାହା ଦେଖାଇବା କବିଙ୍କର ଉଦ୍ଦେଶ୍ୟ ହେତୁତଃ ଅପରିହାର୍ଯ୍ୟ ହୋଇଥିବାର ଅନୁମିତ ହୁଏ । ଫଳତଃ କବିଙ୍କର ଉଦ୍ୟମ ସଫଳ ହୋଇଅଛି । ଭରସା କରୁଁ କବି ଉତ୍ତରୋତ୍ତର ମାତୃଭାଷାର ସେବାରେ ବ୍ରତୀ ହୋଇ ମାତୃଭାଷା ତଥା ମାତୃଭୂମିର ମୁଖ ଉଜ୍ଜ୍ୱଳ କରିବେ ।"*

ସଂପାଦକ–ଦୀନବନ୍ଧୁ ଗଡ଼ନାୟକ ।

(ସମ୍ବଲପୁର ହିତୈଷିଣୀ : ୨୨/୪୮ : ତା ୯.୯.୧୯୧୧: ଶନିବାର ।)

ଏହାବ୍ୟତୀତ 'ମାସଚିତ୍ର' ପୁସ୍ତକର ଏକ ବିଜ୍ଞାପନ ସ.ହି : ୨୩/୧୯ : ତା ୨୪.୨. ୧୯୧୨ ରେ ଦେଖିବାକୁ ମିଳେ । ଯାହାର ଲେଖକ ହେଉଛନ୍ତି ଶ୍ରୀ ଅର୍ଜୁନ ଗଡ଼ତୀୟା । ଶ୍ରୀ ଗଡ଼ତୀୟାଙ୍କ ପରେ "ମାସଚିତ୍ର" ପୁସ୍ତକର ବିଜ୍ଞାପନ 'ସମ୍ବଲପୁର ହିତୈଷିଣୀ'ର ପରବର୍ତ୍ତୀ ପ୍ରାୟ ସାତ ଆଠଟି ସଂଖ୍ୟାରେ ପ୍ରକାଶିତ ହୋଇଛି । ସେଗୁଡ଼ିକ ହେଲା :

ସ.ହି : ୨୩/୨୧ : ତା ୯.୩.୧୯୧୨

ସ.ହି : ୨୩/୨୨ : ତା ୧୬.୩.୧୯୧୨

ସ.ହି : ୨୩/୨୩ : ତା ୨୩.୩.୧୯୧୨

ସ.ହି : ୨୩/୨୪ : ତା ୩୦.୩.୧୯୧୨

ସ.ହି : ୨୩/୨୫ : ତା ୬.୪.୧୯୧୨

ସ.ହି : ୨୩/୨୬ : ତା ୧୩.୪.୧୯୧୨

ସ.ହି : ୨୩/୨୭ : ତା ୨୦.୪.୧୯୧୨

ପରବର୍ତ୍ତୀ କାଳରେ ସ୍ୱପ୍ନେଶ୍ୱର ଦାଶଙ୍କ "ମାସଚିତ୍ର" ପୁସ୍ତକ ଉପରେ ଉଚ୍ଚ ମନ୍ତବ୍ୟ ଦେଇ ଓଡ଼ିଶାର ଖ୍ୟାତନାମା ଗବେଷକ ଡକ୍ଟର ନଟବର ସାମନ୍ତରାୟ ମଧ୍ୟ ତାଙ୍କର "ଓଡ଼ିଆ ସାହିତ୍ୟର ଇତିହାସ" ଗ୍ରନ୍ଥରେ ଲେଖିଛନ୍ତି :

*"ସ୍ୱପ୍ନେଶ୍ୱର ଦାଶଙ୍କ ମାସଚିତ୍ର (୧୯୧୧) ବାର ମାସର ଚିତ୍ର ସମ୍ବଳିତ ଏକ କବିତା ପୁସ୍ତକ । ସଂସ୍କୃତ 'ଋତୁସଂହାର' ପ୍ରଭୃତି କାବ୍ୟ ଏପରି ରଚନାର ମୂଳଉତ୍ସ । ପ୍ରାଚୀନ ରାଗରାଗିଣୀରେ ବିରଚିତ ଏ କବିତା ପୁସ୍ତକରେ ମାସର ବର୍ଣ୍ଣନା ଅପେକ୍ଷା ବିଭିନ୍ନ ମାସରେ ଓଡ଼ିଆ ଜାତୀୟ ଜୀବନ-ଧାରାର ପ୍ରାଧାନ୍ୟ ହିଁ ଏକାନ୍ତ ଲକ୍ଷଣୀୟ । ସମ୍ବଲପୁର ଜୀବନ ସହିତ ସମ୍ବଲପୁରୀ ଭାଷାର ପ୍ରଚଳନ ଏହାର ଅନ୍ୟ ଏକ ବିଶେଷତ୍ୱ ।"*

(ଓ.ସା.ଇ...ଡ. ସାମନ୍ତରାୟ–୨ୟ (ସଂ) ୧୯୮୩, ଅକ୍ଟୋବର ପୃଷ୍ଠା–୫୯୬)

## (୨) ସମ୍ବଲ ମନସା (୧୯୨୩)

"ସମ୍ବଲ ମନସା" ଐତିହାସିକ କାବ୍ୟଗ୍ରନ୍ଥଟି ୧୯୨୩ ମସିହାରେ ସ୍ୱର୍ଣ୍ଣପୁର ମହାରାଜା ଶ୍ରୀ ବୀର ମିତ୍ରୋଦୟ ସିଂହଦେବଙ୍କ ଆର୍ଥିକ ଆନୁକୂଲ୍ୟରେ ପ୍ରକାଶିତ ହୁଏ । ମହାରାଜାଙ୍କ ସୁଯୋଗ୍ୟା ସହଧର୍ମିଣୀ ଶ୍ରୀମତୀ ପାର୍ବତୀ ଦେବୀ ମହାରାଣୀ ସାହେବାଙ୍କ ନାମରେ ପୁସ୍ତକଟିକୁ ଉତ୍ସର୍ଗ କରାଯାଇଛି । ଉତ୍ସର୍ଗ ପତ୍ର ଲେଖିଛନ୍ତି କବି ଭୂଷଣ ସ୍ୱପ୍ନେଶ୍ୱରଙ୍କ

ପତ୍ନୀ ତଥା ନାରୀକବି ଶ୍ରୀମତୀ ପଦ୍ମାବତୀ ଦେବୀ । ସେହି ମୂଲ୍ୟବାନ ଅଥଚ ଦୁର୍ଲ୍ଲଭ "ଉତ୍ସର୍ଗପତ୍ରଟି" ଏଠାରେ ସଂପୂର୍ଣ୍ଣ ରୂପେ ଉଦ୍ଧାର କରାଗଲା :

## ଉତ୍ସର୍ଗପତ୍ର

ପରମାର୍ଜନୀୟା, ନିଖିଳଗୁଣ ବିଭୂଷିତା, ପରଦୁଃଖ କାତରା,
ସ୍ୱର୍ଣ୍ଣପୁର ମଣ୍ଡଳାଖଣ୍ଡଳ ସାର୍ ଶ୍ରୀ (୭) ବୀର ମିତ୍ରୋଦୟ
ସିଂହଦେବ, ଧର୍ମନିଧି, ଜ୍ଞାନଗୁଣାକର, K.C.I.E,
M.R.A.S ମହାରାଜା ଓ ରୁଲିଂ ଚିଫ୍ ମହୋଦୟଙ୍କର
ସୁଯୋଗ୍ୟ ସହଧର୍ମିଣୀ ଶ୍ରୀମତୀ ପାର୍ବତୀ ଦେବୀ
ମହାରାଣୀ ସାହେବା ସୋନପୁର ଷ୍ଟେଟ୍ ମହନୀୟ ଚରିତେଷୁ !

ମାତଃ,

*ଶ୍ରୀ ଛାମୁଙ୍କୁ ମାତଃ ବୋଲି ସମ୍ବୋଧ କରିବାକୁ ମୁଁ ଅଯୋଗ୍ୟା ହେଲେ ହେଁ ଶ୍ରୀଛାମୁ ପ୍ରାକୃତିକ ଉତ୍କଳର ସହସ୍ର ସହସ୍ର ଅସହାୟ ନରନାରୀଙ୍କର ପ୍ରାଣରକ୍ଷାକରି ମାତା ନାମ ସାର୍ଥକ କରିଅଛନ୍ତି । ତଦ୍ଦୃଷ୍ଟିରେ ମୁଁ ଭବଦୀୟ ସନ୍ତତି ହେବାକୁ ସମ୍ପୂର୍ଣ୍ଣ ଅଧିକାରିଣୀ । ଶ୍ରୀ ଛାମୁ ଭାରତୀୟ ନାରୀଜାତିର ଦୁଃଖ ଦୁର୍ଗତି ମୋଚନ ପାଇଁ ନିରନ୍ତର ଅନ୍ତର ଢାଳି ଦେଇଥିବା ମୁଁ ଶତଶତ ପ୍ରମାଣ ପାଇଅଛି । ଦିଲ୍ଲୀ ନଗରୀରେ ପ୍ରତିଷ୍ଠିତ "ଲେଡ଼ି ହାର୍ଡ଼ିଂ ଫିମେଲ୍ ହସ୍ପିଟାଲ", କଲିକତା ନଗରୀସ୍ଥ "ଡଫ୍ରିନ୍ ଫିମେଲ୍ ହସ୍ପିଟାଲ" ଓ ସମ୍ବଲପୁର "କ୍ରଫୋଡ଼ ବାଳିକା ବିଦ୍ୟାଳୟ" କୁ ଆର୍ଥିକ ସାହାଯ୍ୟ ଦାନକରି ଶ୍ରୀଛାମୁ ଭାରତୀୟ ନାରୀ ଜାତିର ପ୍ରାତଃ ସ୍ମରଣୀୟା ହୋଇଅଛନ୍ତି । କଟକ ରେଭେନ୍ସା କଲେଜରେ ଏମ୍.ଏ.କ୍ଲାସ୍ ଖୋଲିବା ପାଇଁ ଶ୍ରୀଛାମୁ ଏକକାଳୀନ ଅର୍ଦ୍ଧଲକ୍ଷ ମୁଦ୍ରା ଦାନକରି ଏକପକ୍ଷରେ ଯେପରି ସ୍ୱୀୟ ବଦାନ୍ୟ ପତିଙ୍କର ଉପଯୁକ୍ତା ସହଧର୍ମିଣୀ ହୋଇଅଛନ୍ତି, ଅନ୍ୟପକ୍ଷରେ ସେପରି ଉତ୍କଳର ମହିଷୀ ସମାଜରେ ଆଦର୍ଶସ୍ଥାନୀୟା ହୋଇଅଛନ୍ତି । ବିଶେଷତଃ, ୧୯୧୮ ସାଲର ଉତ୍କଳ–ବ୍ୟାପୀ ଦୁର୍ଭିକ୍ଷରେ ଶ୍ରୀଛାମୁ ଯେ ଦୟାଦାକ୍ଷିଣ୍ୟର ପରାକାଷ୍ଠା ପ୍ରଦର୍ଶନ କରିଅଛନ୍ତି, ତାହା ଶ୍ରୀଛାମୁଙ୍କର ପବିତ୍ର ନାମକୁ ଚିର ସ୍ମରଣୀୟ କରି ରଖିବ । ବିଗତ ଇୟୁରୋପୀୟ ମହାସମରରେ "ସେଣ୍ଟଜନ୍ ଏମ୍ବୁଲେଶନ୍" ପାଣ୍ଠିକୁ ଶ୍ରୀଛାମୁଙ୍କର ଅଜସ୍ର ଅର୍ଥଦାନ ପୃଥିବୀର ଇତିହାସରେ କାଳ କାଳ ଅଙ୍କିତ ରହିବ ।*

*ସର୍ବୋପରି ଶ୍ରୀଛାମୁ ମୋହର ଶିଶୁ ସନ୍ତାନର ଜୀବନ ରକ୍ଷା କଳ୍ପେ କ୍ଷୀର ସଂସ୍ଥାନ କରି ମୋ ପ୍ରତି ଯେ ମାତୃ ଜନୋଚିତ ସହାନୁଭୂତି ଦେଖାଇଛନ୍ତି, ତାହା ମୁଁ ଆଜୀବନ ଭୁଲିପାରିବି ନାହିଁ । ମୁଁ ସେହି ସହାନୁଭୂତିର କୃତଜ୍ଞତାରେ ପ୍ରତ୍ୟୁପହାର ଦେବାପାଇଁ ଅନ୍ୟକିଛି ଦ୍ରବ୍ୟ ସମ୍ଭାର ନପାଇ, ମୋହର ସ୍ୱାମୀଙ୍କ ରଚିତ ଏହି "ସମ୍ବଲ–ମନସା" ଖଣ୍ଡିକ ଶ୍ରୀଛାମୁଙ୍କର ଶ୍ରୀକର କମଳରେ ସଭକ୍ତିରେ ସମର୍ପଣ କଲି । ଏହି କ୍ଷୁଦ୍ର ପୁସ୍ତିକାଟି ଆମ୍ଭମାନଙ୍କ ଦାମ୍ପତ୍ୟ–*

*ଜୀବନର ଦୁଃଖାବସରରେ ମୋହର ଚିତ୍ତ ବିନୋଦନାର୍ଥ ଲିଖିତ ହୋଇଥିଲା । ମୁଁ ଏହି ସୂତ୍ରରେ ସମ୍ବଲପୁରରେ କେତେକ ଐତିହାସିକ ଓ ଭୌଗୋଳିକ ଜ୍ଞାନ ସହିତ ଦେବତାମାନଙ୍କୁ ମନାସିବାକୁ ସୁଯୋଗ ପାଇ ସାମୟିକ ଶାନ୍ତିଲାଭ କରିଥିଲି । ମୋହର ସ୍ୱାମୀଙ୍କ ଲିଖିତ ନାନା ପୁସ୍ତକ ପୁସ୍ତିକା ମଧ୍ୟରୁ ଏଖଣ୍ଡିକ ମୋହର ନିଜସ୍ୱ । ସୁତରାଂ ଆଜି ଏହାର ସମସ୍ତ ସ୍ୱତ୍ୱ ସହିତ ଶ୍ରୀଛାମୁଙ୍କ ଗୌରବିତ ନାମରେ ଉତ୍ସୃଷ୍ଟ କଲି । ଇତି ।*

ଶ୍ରୀଛାମୁଙ୍କର
ଶ୍ରୀମତୀ ପଦ୍ମାବତୀ ଦେବୀ

ରୋହିଣୀୟା (ବରଗଡ଼)
ଫାଲ୍‌ଗୁନ ଶୁକ୍ଳ ପଞ୍ଚମୀ
ବୁଧବାର ସମ୍ବତ୍ ୧୯୭୯ ସାଲ

''ସମ୍ବଲ–ମନସା'' କାବ୍ୟରେ ସାତଟି ଦୀର୍ଘ କବିତା ସନ୍ନିବେଶିତ ହୋଇଛି । ସେଗୁଡ଼ିକ ହେଲା : (୧) ପର୍ବତ ମନସା–'ଚକ୍ରକେଳି' ରାଗରେ ରଚିତ । (୨) ନଦୀ ମନସା– ରାଗ–ନଟବାଣୀ । (୩) ରାଜ୍ୟମନସା–ରାଗ–ମଙ୍ଗଳଗୁଜ୍ଜରୀ । (୪) ଜମିଦାରୀ ମନସା–ରାଗ– ରାମକେରୀ । (୫) ମାଫିଦାରୀ ମନସା–ରାଗ–ମୁନିବରବାଣୀ । (୬) ମହାରାଜା ମନସା–ରାଗ–ବଙ୍ଗଳାଶ୍ରୀ । ଏବଂ (୭) ଦେବତାମନସା–ରାଗ ଚୋଖିରେ ରଚିତ । ''ସମ୍ବଲ–ମନସା''ର ଭୂମିକାରେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଲେଖିଛନ୍ତି :

> *''ସମ୍ବଲପୁର ଜିଲ୍ଲାର ଐତିହାସିକ ଓ ଭୌଗୋଳିକ ବିବରଣ ମନସାସୂତ୍ରଗତ ପଦ୍ୟବନ୍ଧରେ ଲିଖିତ ହୋଇ ''ସମ୍ବଳମନସା'' ନାମଧାରଣ କରିଅଛି । ''ସମ୍ବଳ ମନସା'' ର ପ୍ରାୟ ସମସ୍ତ ମନସା ''ହୀରାଖଣ୍ଡ''ରେ ପ୍ରକାଶିତ ହୋଇଥିଲା । ଭୂଗୋଳ ପରି ନୀରସ ପାଠ ପ୍ରତି ଆବାଳ ବୃଦ୍ଧ ବନିତାଙ୍କର ମନୋଯୋଗ ଜନ୍ମାଇବା ଉଦ୍ଦେଶ୍ୟରେ ମୁଁ ଏହି ନୂତନ କାର୍ଯ୍ୟରେ ହସ୍ତକ୍ଷେପ କରିଅଛିଁ ।''*

### ଭୂମିକା

''ସମ୍ବଲ–ମନସା'' କାବ୍ୟରେ କବିଭୂଷଣ ସ୍ୱପ୍ନେଶ୍ୱର ଲେଖିଛନ୍ତି :

''ସମ୍ବଳ ନଗରୀ ପୂର୍ବଦିଗରେ ।
ଥାନାଟିଏ ଯା'ର ପାଦ ଦେଶରେ ।
ବାଘ ଭାଲୁଙ୍କର ବିହାର ସ୍ଥାନ ।

ଯହିଁ ମୋ' ସମ୍ବନ୍ଧୀ ଛାଡ଼ିଲେ ପ୍ରାଣ ।
ଲୋକ ଈଶ୍ୱରଙ୍କର ମୃଗୟାକାଳେ ।
ଭୁଞ୍ଜିଲେ ଲେଖା ଯା' ଥିଲା କପାଳେ ।
ହାୟ ! ଆଜ ସୁମରିଲେ ସେ କଥା ।
ହୃଦେ ଫୁଟିଉଠେ ଦାରୁଣ ବ୍ୟଥା ।
ଯା' ହେବାର ଥିଲା ହେଲା ତା' ଛାଡ଼ ।
ଦେଖିଛି ଏକା ମୁଣ୍ଡେର ପାହାଡ଼ ।''

(ସମ୍ବଲ ମନସା, ପୃ.୩)

'ଯହିଁ ମୋ ସମ୍ବନ୍ଧୀ ଛାଡ଼ିଲେ ପ୍ରାଣ' ବୋଲି ଏଠାରେ ଯାହାଙ୍କ ସଂପର୍କରେ ଉଲ୍ଲେଖ କରାଯାଇଛି ସେହି ମହାଶୟ ଜଣକ କିଏ ? ସେହି ମହାଶୟ ଜଣକ ହେଉଛନ୍ତି ସ୍ୱର୍ଗୀୟ ମଧୁସୂଦନ ପତି । ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପ୍ରଫେସର ଡକ୍ଟର ପ୍ରଫୁଲ୍ଲ କୁମାର ପତିଙ୍କ ପିତାମହ । 'ସମ୍ବଲ ମନସା'ର ଏହି ଘଟଣାବଳୀକୁ ନିଜ ପିତାମହଙ୍କ (ଡ. ପ୍ରଫୁଲ୍ଲ କୁମାର ପତିଙ୍କ ପିତାମହ (ମାଆଙ୍କ ବାପା) କବିଭୂଷଣ ପଣ୍ଡିତ ସ୍ୱପ୍ନେଶ୍ୱର ଦାଶ) ଠାରୁ ଶୁଣି ପରବର୍ତ୍ତୀ କାଳରେ ପ୍ରଫେସର ପତି ତାଙ୍କ ଆତ୍ମଚରିତ ''ନିଜକଥା'' ରେ ଉଲ୍ଲେଖ କରି କହିଛନ୍ତି :

''ମୋର ବାବା (ବାପାଙ୍କ ବାପା) ମଧୁସୂଦନ ଗୋଟିଏ ସାହେବ ଯୁବ ଆଇ.ସି.ଏସ୍. ଅଫିସରଙ୍କୁ ଶିକାର ଟ୍ରେନିଂ ଦେବାପାଇଁ ମୁଣ୍ଡେଇ ଜଙ୍ଗଲକୁ ନେଇଥିଲେ । ମୁଣ୍ଡେର ପାଖରେ ଘଞ୍ଜଙ୍ଗଲ । ତାହା ସମ୍ବଲପୁରରୁ ପ୍ରାୟ ୨୦ କିଲୋମିଟର ଦୂରରେ । ମୁଣ୍ଡେର ସମ୍ବଲପୁର କଟକ ରାସ୍ତା କଡ଼ରେ । ଏବେବି ସେହି ଡାକବଙ୍ଗଳା ରହିଛି ଯେଉଁଠି ଶିକାରୀ ଦଳ ରହୁଥିଲେ । ଚାନ୍ଦିନୀ ରାତି, ଶୀତଦିନ । ମୋର ବାବା ଓ ସାହେବ ପାଇଁ ଗଛ ଉପରେ ଯେଉଁ ମଚାନ୍ ତିଆରି କରା ହୋଇଥିଲା ତାହା ଥିଲା ତଳୁ ପ୍ରାୟ ୧୨ ଫୁଟ୍ ଉପରେ, କାରଣ ଅତିବେଶୀ ହେଲେ ବାଘ ୧୨ ଫୁଟ୍ ଡେଇଁପାରେ । ଗଛରେ ଛେଳି ବନ୍ଧା ହୋଇଛି । ଲୋକେ ପାଟିତୁଣ୍ଡ କରି ବାଜା ବଜାଇ ଖେଦା କଲେ ଅର୍ଥାତ୍ ବାଘକୁ ସେହି ଗଛଆଡ଼କୁ ଖେଦିବା ପାଇଁ ଖୁବ୍ ଚେଷ୍ଟା କଲେ । କିନ୍ତୁ ବାଘର ଦେଖା ମିଳିଲା ନାହିଁ । ସାହେବ ମଚାନରେ ଶୋଇ ପଡ଼ିଲେ । ମୋର ବାବା ବି ଶୋଇବା ପାଇଁ ବାହାରିଲେ । ଶୋଇବା ଆଗରୁ ପରିସ୍ରା କରିବା ପାଇଁ ତଳକୁ ଓହ୍ଲାଇଲେ, ଯାହା ନ କରିବା କଥା । କିନ୍ତୁ କାଳ ଆସିବାକୁ ଥିଲେ ତାହା ନିଜ ଆଡ଼କୁ ଟାଣିନେବ । ଶୀତଦିନ, ମୋର ବାବା ଚେକ୍ କୋଟ୍ ପିନ୍ଧିଥିଲେ । ସେ ପରିସ୍ରା ସାରି ଫେରୁଛନ୍ତି, ତାଙ୍କ ପାଦ ତଳେ ଶୁଖିଲା ପତ୍ର ଖଡ଼ଖଡ଼ କରୁଛି । ସାହେବର ନିଦ ହଠାତ୍ ଭାଙ୍ଗିଗଲା । ସେ ବାଘ ଆସୁଛି ଭାବି ନିଜ ବାଉଳାରେ ବନ୍ଧୁକ ଚଳାଇ ଦେଲେ । ମୋର ବାବା ଟଳି ପଡ଼ିଲେ । କିନ୍ତୁ ବ୍ରିଟିଶ ରାଜତ୍ୱ ।

ଜଣେ ସାହେବ କିପରି ନରହତ୍ୟା ଦୋଷରେ ଆସାମୀ ହେବେ ? ଜାରି ହୋଇଗଲା 'ମଧୁପତିକୁ ବାଘ ମାରିଦେଲା ।' ମୋର ବାବାଙ୍କର ଶବ ଟାଉନକୁ ଅଣାହେଲା । ଆମ ଘର ଗଳି ମୁଣ୍ଡରେ ଶବକୁ ଖୁବ୍ ଅଳ୍ପ ସମୟ ପାଇଁ ଅଟକାଇଲେ । ତା'ପରେ ଶବକୁ ପୋଡ଼ି ଦିଆଗଲା ।

ସାନ୍ତ୍ୱନା ଦେବା ପାଇଁ ମୋର ବାପାଙ୍କୁ ଗୋଟିଏ କିରାଣୀ ଚାକିରୀ ଦିଆଗଲା ଏବଂ ଏକ ଅଦ୍‌ଭୁତ୍ କଥା କରାଗଲା । ସେ ପଢୁଥିବେ ଏବଂ ତାଙ୍କର ଚାକିରୀ ବି' ରହିବ । ମୋର ବାପା ମେଟ୍ରିକୁଲେସନ୍ ଫାଷ୍ଟ ଡିଭିଜନରେ ପାସ୍ କରିବା ପରେ ସେହି ଚାକିରୀରେ ଅବଶ୍ୟ ଯଥାଯଥ ପଦୋନ୍ନତି ସହ ମରିବା ପର୍ଯ୍ୟନ୍ତ ରହିଲେ ।''

(ନିଜକଥା ୨୦୦୭, ପୃଷ୍ଠା–୨୧)

ଏଠାରେ ସୂଚନାଯୋଗ୍ୟ ଯେ, ସେ ସମୟରେ ସମ୍ବଲପୁରରେ ଯେଉଁ ଇଂରେଜ ସାହେବମାନେ ଚାକିରୀ କରୁଥିଲେ ସେମାନେ ସମସ୍ତେ ପ୍ରାୟତଃ ଭ୍ରମଣବିଳାସୀ ଥିବା ସହ ଶିକାର କରିବାକୁ ଖୁବ୍ ଭଲ ପାଉଥିଲେ । ସେ ସଂପର୍କରେ 'ସମ୍ବଲପୁର ହିତୈଷିଣୀ' ଘୋଷଣା କରି କହିଛି :

''...ଶ୍ରୀମାନ୍ ଡିପୋଟି କମିଶ୍ନର ସାହେବ ଓ ଉଇଲ୍‌ସନ୍ ସାହେବ ଶିକାରରୁ ପ୍ରତ୍ୟାବୃତ୍ତ ହୋଇଅଛନ୍ତି । ଶ୍ରୀମାନ୍ ଡିପୋଟି କମିଶ୍ନର ସାହେବ ଗୋଟିଏ ବ୍ୟାଘ୍ର ଶିକାର କରିଅଛନ୍ତି ।''

(ସମ୍ବଲପୁର ହିତୈଷିଣୀ: ୨୧/୨୭ : ତା ୨୩.୪.୧୯୧୦, ପୃ.୩୪)

'ସମ୍ବଳ–ମନସା'ରେ କବି ଲେଖିଛନ୍ତି :

''ସମ୍ବଳ ସନ୍ତାନ ହୋଇ ।
ହୁମା ଶିବରାତ୍ରୀ ଦେଖି ଯେ ନାହିଁ ଯେ ।
ତା'ଠାରୁ ଅଭାଗା କାହିଁ ? ସୁଜନେ ସେ ।'' (ପୃଷ୍ଠା–୨୦)

ଉପରୋକ୍ତ ପଦରେ କବି ହୁମା ଶିବରାତ୍ରି କଥା ବର୍ଣ୍ଣନା କରିଛନ୍ତି । ହୁମାର ଶ୍ରୀଶ୍ରୀବିମଳେଶ୍ୱର ମହାଦେବଙ୍କ ପ୍ରତ୍ୟକ୍ଷ ମହିମା ଅଛି । ଦୁର୍ଲ୍ଲଭ ମାନବ ଜନ୍ମଲାଭ କରି ପ୍ରତ୍ୟେକ ମଣିଷ ଥରେ ଥରେ ହୁମାର ବିମଳେଶ୍ୱର ବାବାଙ୍କ ସାକ୍ଷାତ୍ ଦର୍ଶନ କରିବା କଥା କବି ଏଠାରେ ସୂଚନା ଦେଇଛନ୍ତି । ନହେଲେ ତାଙ୍କ ମତରେ ମଣିଷ ଜନ୍ମର କୌଣସି ସାର୍ଥକତା ହିଁ ନାହିଁ । 'ସମ୍ବଳ–ମନସା'ର ଏଭଳି ବହୁପଦରେ ଗର୍ଭିତ ଭାବ ସଂପଦ ନିହିତ ରହିଛି । ହୁମାର ଶ୍ରୀ ଶ୍ରୀ ବିମଳେଶ୍ୱର ବାବା ହେଉଛନ୍ତି ସମ୍ବଲପୁରର ଅଷ୍ଟଶମ୍ଭୁମାନଙ୍କ ମଧ୍ୟରେ ଅଗ୍ରପୂଜ୍ୟ ଦେବତା । ସମ୍ବଲପୁରର ଅଷ୍ଟଶମ୍ଭୁ ହେଲେ :

୧. ହୁମାର ବିମଳେଶ୍ୱର ବାବା
୨. ଅମ୍ବାଭନାର କେଦାରନାଥ

୩. ଦେଓଗାଁର ବିଶ୍ୱନାଥ
୪. ଗାଈସମାର ବାଲୁଙ୍କେଶ୍ୱର
୫. ମାନେଶ୍ୱରର ମାନ୍ଧାତା
୬. ସୋର୍ଣ୍ଣାର ସ୍ୱପ୍ନେଶ୍ୱର
୭. ସରଣ୍ଡାର ବିଶ୍ୱେଶ୍ୱର
୮. ନୀଳଜୀର ନୀଳକଣ୍ଠେଶ୍ୱର

କବି ପୁଣି ଲେଖିଛନ୍ତି :

''ଅମ୍ବାଭୋନା ଅରଣ୍ୟରେ ।
କେଦାରନାଥେ ବସନ୍ତି ସୁଖରେ ଯେ ।
ପଥର ଗଡ଼ ଭିତରେ । ସୁଜନେ ହେ ।'' (ସମ୍ବଲ ମନସା, ପୃ.୨୦)

ଅଷ୍ଟଶମ୍ଭୁ ସ୍ଥାପୟିତା ଦକ୍ଷିଣରାୟ ଦେଓ୍ୱାନଙ୍କ ଦ୍ୱାରା ପ୍ରତିଷ୍ଠିତ ''କେଦାରନାଥ'' ମହାଦେବଙ୍କ ଭାଳପାଲି ଓ ସତୀ ଦର୍‌ହା ନାମକ ଦୁଇଗୋଟି ଗ୍ରାମ ମାଫି ଅଛି । ଏହି ମନ୍ଦିରକୁ ବେଷ୍ଟନ କରି ଗୋଟିଏ ପଥର ଗଡ଼ ଅଛି ।

''ଏକ ଶ୍ୱାସେ ଶଙ୍ଖ ଫୁଙ୍କି କରି ପରିକ୍ରମା
ଯା' ସେବକ କରିନେଲା ସେବାଭୂମି ସୀମା;
''ବାଲୁକେଶ୍ୱର'', ''ବରାଡବାଲୁଙ୍କେଶ୍ୱର''ଙ୍କୁ
ପୂଜିବ ସମ୍ବଲେ ପୁଣି ଗାଈସମା ଗ୍ରାମେ ।'' (ସମ୍ବଲ-ମନସା, ପୃ.୩୫)

ଅଷ୍ଟଶମ୍ଭୁରୁ ଏକ ଶମ୍ଭୁ ''ବରାଡ଼ ବାଲୁଙ୍କେଶ୍ୱର'' ନାମରେ ଗାଈସମାରେ ପ୍ରତିଷ୍ଠିତ । ଏହି ମନ୍ଦିରର ପୂଜାରି ଏକଶ୍ୱାସରେ ଶଙ୍ଖ ଫୁଙ୍କି ଯେତେଦୂର ବୁଲି ଆସିଥିଲା, ସେହିସବୁ ଭୂମି ମହାଦେବଙ୍କ ନାମରେ ରକ୍ଷିତ ହେଲା ।

ସ୍ୱର୍ଣ୍ଣପୁର ମହାରାଜା ଶ୍ରୀ ବୀର ମିତ୍ରୋଦୟ ସିଂହଦେବଙ୍କ ପ୍ରଶସ୍ତି ମଧ୍ୟ ଏହି ''ସମ୍ବଲମନସା'' ଐତିହାସିକ କାବ୍ୟରେ ବର୍ଣ୍ଣିତ ହୋଇଛି । କବି ସ୍ୱପ୍ନେଶ୍ୱର ଲେଖିଛନ୍ତି :

''ବୀର ମିତ୍ରୋଦୟ ସିଂହ ପୂଜନ୍ତି ନିଷ୍ଠାରେ;
ଯା'ଙ୍କ କୃପାବଳେ ସ୍ୱର୍ଣ୍ଣପ୍ରସୂ ସ୍ୱର୍ଣ୍ଣପୁର ।
ବସାନ୍ତି ପ୍ରଜାଏ ସଦା ଭୁଞ୍ଜି ସୁଖଶାନ୍ତି;
ଭଲାବାଛି ମନାସିଲ ସେ ସୁବର୍ଣ୍ଣମେରୁ ।'' (ସମ୍ବଲ-ମନସା, ପୃ. ୪୩)

ଜଣେ ଥୋଡ଼ିଆ ମହାଜନ ବଉଦସୀମା ତେଲନଦୀସ୍ଥ ଗୋଟିଏ ପଥରରେ ଡାମ୍ଫଣ ଘସି ଦେଖିଲା ଯେ ତାହା ସୁନା ହୋଇଯାଇଛି । ସେ ସ୍ୱପ୍ନାଦେଶ ଅନୁସାରେ

ସୋନପୁର ସୀମାକୁ ଶିଳାଖଣ୍ଡିକ ଆଣି ଆସିଲା । ସୋନପୁରରେ ଅଢ଼ାଇଦିନ ସୁନାବୃଷ୍ଟି ହୋଇଥିଲା ।

"ସମ୍ବଲ ମନସା" କାବ୍ୟର ଶେଷ ସର୍ଗ ବା ସପ୍ତମ କବିତାରେ କବି ଉତ୍କଳର ଦେବାଦେବୀଙ୍କୁ ସ୍ମରଣ ପୂର୍ବକ ବନ୍ଦନା କରି ଲେଖିଛନ୍ତି :

(୧)

ସୋମଲାଇ, ଜଗନ୍ନାଥ, ସୋମନାଥ, ଗୋପୀନାଥ,
ଦେବ ମଦନ ଗୋପାଳ, ଶ୍ରୀ ସୁରେଶ୍ୱରୀ;
ପାଟଖଣ୍ଡା, ମାନେଶ୍ୱର, ବଞ୍ଜାରୀ, ବାଲୁଙ୍କେଶ୍ୱର,
ଶ୍ରୀ କେଦାରନାଥ, ଦେବୀ ମାଣିକେଶ୍ୱରୀ ।
ପାଟଣେଶ୍ୱରୀ, ସ୍ୱପ୍ନେଶ୍ୱର ।
ପଶ୍ଚିମେଶ୍ୱର ଟିକିରା ଗୋସାଇଁ ସ୍ମର ।

(୨)

ଗୋପାଳଜି, ମାନେଶ୍ୱର, ବ୍ରହ୍ମପୁରା, ସିଦ୍ଧେଶ୍ୱର
ଶ୍ରୀ ମଦନମୋହନ, ଶ୍ରୀ ପାଟଣେଶ୍ୱରୀ;
ବଞ୍ଜାରୀ, ଶ୍ରୀଜଗନ୍ନାଥ, ଝଙ୍କଡ଼ା, କେଦାରନାଥ,
ହରିଶଙ୍କର, ପଶ୍ଚିମେଶ୍ୱରଙ୍କୁ ଧରି ।
ବିମଳେଶ, ନୃସିଂହନାଥ;
ସୁବର୍ଣ୍ଣମେରୁ, ଟିକିରା ଗୋସାଇଁ ସାଥ ।

(ସମ୍ବଲ ମନସା, ପୃ.୩୧)

## (୩) କବିତା ଝଟିକା (୧୯୫୬) :

୧୫ ଟି କବିତାକୁ ନେଇ "କବିତା ଝଟିକା" ନାମରେ ଏକ ସ୍ୱତନ୍ତ୍ର କବିତା ପୁସ୍ତକ ପ୍ରକାଶ ପାଇଛି ୧୯୫୬ ମସିହା, ମଧ୍ୟ ଭାଗରେ । କବି ସ୍ୱପ୍ନେଶ୍ୱର ନିଜେ ଏହି କାବ୍ୟ ସଂକଳନର ପ୍ରକାଶକ ଥିଲେ । ଏହି କାବ୍ୟ ସଂକଳନକୁ ନିଜର ପ୍ରିୟତମା ପତ୍ନୀ ସ୍ୱର୍ଗତା ନାରୀ କବି ଶ୍ରୀମତୀ ପଦ୍ମାବତୀ ଦେବୀଙ୍କୁ ଉତ୍ସର୍ଗ କରି ଲେଖିଥିଲେ :

**ସମର୍ପଣ ପତ୍ର**

ପ୍ରିୟ ତମେ,

*ଗଲାବେଳେ କହୁଥିଲ ତୁମ୍ଭେ କେତେଥର ।*
*"କରିବ ମୋ ବିଚ୍ଛେଦରେ ଛାତିକି ପଥର ।।*
*ନୋହିବ ମୋ ପାଇଁ ତୁମ୍ଭେ କିଞ୍ଚିତ କାତର ।*

*ଯାଉଛି ମୁଁ ଝଡ଼ି ସିନା ପାଚିଲା ପତର ।।*
*ଏହିମତେ କେତେ ପ୍ରେମ–ସୁଧା ନିରନ୍ତର ।*
*ରଖି ନପାରିଲା ମନ–ସଚ୍ଛିଦ୍ର–ପାତର ।।*
*ହେଉଅଛି ଘାଣ୍ଟିବାଣ୍ଟି ତେଣୁ ମୋ ଅନ୍ତର ।*
*ଲେଖିଲି ଦୁଇଭଣା ଏ କବିତା ସତର ।।*
*ତୁମ୍ଭେ ତ ଆଦର୍ଶ ନାରୀ ମର ଜଗତର ।*
*ଏ ସମର୍ପଣଟି ତୁମ୍ଭପ୍ରତି କିଞ୍ଚିତ ତର ।।*
*ସ୍ୱାମୀ– ସମର୍ପଣ ଜ୍ଞାନେ ତୁମ୍ଭରି ଅନ୍ତର ।*
*କରିବ ଗ୍ରହଣ ପ୍ରେମେ ମଣି ମହତ୍ତର ।।*
*ହେବ ତବ ସ୍ୱର୍ଗବାସେ ଏ ଇଷ୍ଟ ମନ୍ତର ।*
*ପ୍ରଥମ ବାର୍ଷିକ ଶ୍ରାଦ୍ଧେ ହୋଇ ତରତର ।।*
*ସମର୍ପିଲି ଘେନ ପ୍ରିୟେ ! 'ଝଟିକା–ଅନ୍ତର ।*
*ହେବ ଭାବି ସ୍ୱର୍ଗଧାମେ ତବ ପ୍ରିୟତର ।।*
*କରେ ଅଳି ପ୍ରାଣେଶ୍ୱରୀ ! ସ୍ୱାମୀ ସକାତର ।*
*ମିଳୁଥିବ ଯେହ୍ନେ ମୋତେ ଜନ୍ମଜନ୍ମାନ୍ତର ।।*

ତୁମର
କଟକ, ୧୨.୪.୫୬ ''ବିଜେର ବାପା''
ଶ୍ରୀ ସ୍ୱପ୍ନେଶ୍ୱର ଦାଶ

''କବିତା–ଝଟିକା'' କାବ୍ୟ ସଂକଳନର ଆଦ୍ୟରେ କବି ଲେଖିଛନ୍ତି :

*''ସାହିତ୍ୟ ଉନ୍ନତି ବିନା କି ଜାତି କି ବ୍ୟକ୍ତି,*
*ହୋଇନାହିଁ–ହେବନାହିଁ ଶ୍ରେଷ୍ଠ କଦାଚନ,*
*ଅତୀତର ପରିଚୟ ଦିଏ ଅଭିବ୍ୟକ୍ତି*
*ସେ ଜାତିର ସେ ବ୍ୟକ୍ତିର ଭାଷା–ପ୍ରବଚନ ।*
*ବୈଦିକ ଯୁଗର କିବା ପୁରାଣ ଯୁଗର,*
*ଭାରତୀୟ ଆର୍ଯ୍ୟଙ୍କର ଦେଖିଲେ ସାହିତ୍ୟ,*
*ଜଣାଇଦେବ ହିମାଦ୍ରୀ ସହିତ ସାଗର,*
*ଥିଲା ବିଶ୍ୱେ ସମୁନ୍ନତ ଆର୍ଯ୍ୟାବର୍ତ୍ତନିତ୍ୟ ।''*

(କବିତା ଝଟିକା–୧୯୫୬,ପୃ. ୧)

ପ୍ରଭୃତି ପଦଗୁଡ଼ିକରେ ମାତୃଭୂମି, ମାତୃଭାଷା ପ୍ରତି, ଦେଶ ଓ ଜାତିପ୍ରତି, ଅତୀତ ଉତ୍କଳ ତଥା ଭାରତର ଗୌରବ ପ୍ରତି କବିଙ୍କର ଗଭୀର ମମତା, ଗଭୀର

ସମ୍ମାନ ଥିବାର କଥା ସୂଚିତ ହେଉଛି । କବିଙ୍କ ଭାଷାରେ ସାହିତ୍ୟ ବିନା ପୃଥିବୀର କୌଣସି ସଭ୍ୟତା, ସଭ୍ୟ ନୁହେଁ । କବିଭୂଷଣ ସେହିପରି ଆଦର୍ଶରେ ନିଜର ଜୀବନ, ନିଜର ସନ୍ତାନମାନଙ୍କୁ ଗଢ଼ିଥିଲେ ।

"କବିତା–ଝଟିକା" ସଂକଳନର ପ୍ରଥମ କବିତା "ବୃଦ୍ଧକବିର ଅନୁଚିନ୍ତା"ରେ କବି ସ୍ୱପ୍ନେଶ୍ୱର ଲେଖିଛନ୍ତି :

*"ହେଲାଣି ତ ଆସି ବୟସ ଏକାଶୀ*
*ବରଷ ତେବେ ବାସନା ।*
*ହେଉନାହିଁ କ୍ଷାନ୍ତ କରୁଛି ଅଶାନ୍ତ*
*ଭାରତୀର ଉପାସନା ।*
*ପନ୍ଦର ବରଷ– ବୟସୁଁ ଅଭ୍ୟାସ*
*ହୋଇଯାଇଛି ମୋହର ।*
*ଲେଖା–ମାଦକତା ଏବେ କି ଯିବ ତା*
*ହେଲାଣି ନିଶା ଜହର !"* ( ପୃ.୧)

ଉପରୋକ୍ତ ପଦଦୁଇଟିରୁ ଜଣାପଡ଼େ ଯେ, କବି ପନ୍ଦର ବର୍ଷଠାରୁ ସାହିତ୍ୟ ଶିକ୍ଷା ଓ ସାରସ୍ୱତ ସାଧନାରେ ନିମଗ୍ନ ହୋଇ ଏକନିଷ୍ଠ ଭାବରେ ୮୧ ବର୍ଷ ବୟସ ପର୍ଯ୍ୟନ୍ତ ଜୀବନ ଅତିବାହିତ କରିଛନ୍ତି । ତାଙ୍କ କବି ଜୀବନର ପ୍ରଥମ ଝଲକ ଏଠାରେ ସ୍ପଷ୍ଟ ଭାବେ ଉଦ୍‌ଘାଟିତ । କବି ଲେଖିଛନ୍ତି :

*ବୀଣାପାଣି ! ତବ କି କରିବି ସ୍ତବ*
*କାହିଁ ମମ ଜ୍ଞାନବଳ ?*
*ବ୍ୟାସ ବାଲମୀକି ଅକ୍ଷମ ଯହିଁକି*
*ତେଡ଼େ ତେଡ଼େ ତପୋବଳ ।।*
*ତବ ଜ୍ଞାନ ସିନ୍ଧୁ ମଧ୍ୟୁ ଏକ ବିନ୍ଦୁ*
*ଭାଗ୍ୟେ ଲଭି କାଳିଦାସ ।*
*ରଖିଯାଇଛନ୍ତି କବିତାକୀରତି*
*ହୋଇ ସେ ଭାରତୀ- ଦାସ ।।"*

(କବିତା ଝଟିକା–୧୯୫୬, ପୃଷ୍ଠା.୩)

କବି ସ୍ୱପ୍ନେଶ୍ୱର ଦାଶ ଜୀବନରେ ଅନେକ ମହଦ୍‌ବ୍ୟକ୍ତି, ସାରସ୍ୱତ ପୁରୁଷଙ୍କ ସାନ୍ନିଧ୍ୟ ଲାଭ କରିଥିଲେ । ସେମାନଙ୍କ ମଧ୍ୟରେ ବ୍ୟାସକବି ଫକୀର ମୋହନ ସେନାପତି, କବିବର ରାଧାନାଥ, ଭକ୍ତକବି ମଧୁସୂଦନ ରାଓ, ସ୍ୱଭାବକବି ଗଙ୍ଗାଧର

ମେହେର, ପଲ୍ଲୀକବି ନନ୍ଦକିଶୋର ବଳ, ଭଂଜ, ଅଭିମନ୍ୟୁ, କବିସୂର୍ଯ୍ୟ ପ୍ରଭୃତି ପ୍ରାଚୀନ ଓଡ଼ିଆ କବିଙ୍କୁ ସସମ୍ମାନ ଜଣାଇ ସ୍ମରଣ କରିଛନ୍ତି । ଠିକ୍ ସେହିପରି କବି ଶେଖର ଚିନ୍ତାମଣି ମହାନ୍ତିଙ୍କ ସାନିଧ୍ୟ ଲାଭ କରି ନିଜର ଜୀବନକୁ ଧନ୍ୟ ମଣିଥିଲେ କବି ସ୍ୱପ୍ନେଶ୍ୱର । କବି ମହାନ୍ତିଙ୍କୁ ଜୀବନରେ ଥରେ ମାତ୍ର ଦେଖି ଅପୂର୍ବ ଆନନ୍ଦ ଲାଭ କରିଥିବାର କଥା ତାଙ୍କର ''ବୃଦ୍ଧ କବିର ଅନୁଚିନ୍ତା'' କବିତାରେ ଉଲ୍ଲେଖ କରି ଲେଖିଛନ୍ତି

*''ଉତ୍କଳେ ଉପେନ୍ଦ୍ର ଭଂଜ ଯେ ରାଜେନ୍ଦ୍ର*
*ସୁଖଭୋଗ କରି ତ୍ୟାଗ ।*
*ତବ ଆରାଧନା ସାହିତ୍ୟ ସାଧନା*
*କରିଦେଲେ ମହାଭାଗ ।।*
*ରାଧାନାଥ ମଧୁ ଢାଳି ସୁଧାମଧୁ*
*ମୁମୂର୍ଷୁ ଉତ୍କଳ ମୁଖେ ।*
*ପୂର୍ବଭାଗ୍ୟ ବଳୁଁ ବଙ୍ଗଳା କବଳୁ*
*ବଞ୍ଚାଇଲେ କେତେ ଦୁଃଖେ ।।*
*ଉତ୍କଳ–ସମ୍ବଳ ପଲ୍ଲୀକବି ବଳ*
*ଥିଲେ ସେ ନନ୍ଦକିଶୋର ।*
*ଯୋଗ୍ୟ ଚିତ୍ରକର ଯେ ପଲ୍ଲୀଗ୍ରାମର*
*ଉତ୍କଳ–କବି–କିଶୋର ।।*
*ବ୍ୟାକରଣ–ଖଣି କବି ଚିନ୍ତାମଣି*
*ଦେଖିଥିଲି ଯାଙ୍କୁ ଥରେ ।*
*ଘେନି ଅର୍ଦ୍ଧାଙ୍ଗିନୀ ମୋ ଚିର ସଙ୍ଗିନୀ*
*ସହ ଭ୍ରମଣ ପଥରେ ।।*
*ଆହା ! ସେ କଥନ ଯାବତ ଜୀବନ*
*ହେବି ନାହିଁ ମୁଁ ବିସ୍ମୃତ ।*
*ପଡ଼େ ମନେ ଯେବେ ଯୁଗପତି ତେବେ*
*ହୁଅଇ ଚିତ୍ତ ବିକୃତ ।।"* (କବିତା ଝଟିକା, ପୃ.୪)

'କବିତା–ଝଟିକା'ରେ ଥିବା 'ଉଷା ସ୍ୱାଗତ' ହେଉଛି ଗୋଟିଏ ଚମତ୍କାର କବିତା । ଠିକ୍ ସେହିପରି 'ପ୍ରଦୋଷେ ମେଲାଣି' କବିତାରେ ତାଙ୍କ ପତ୍ନୀ ବିୟୋଗ ଜନିତ ଦୁଃଖ ଲିପିବଦ୍ଧ କରିଛନ୍ତି । 'ମସ୍ତିଷ୍କ ଓ ହୃଦୟ' କବିତାରେ କବି ଲେଖିଛନ୍ତି :

"ଜୀବଜନ୍ତୁ ମଧ୍ୟେ ଏକା ଅଙ୍ଗେ ମାନବର,
ମସ୍ତିଷ୍କ ହୃଦୟ ବେନି ଅଛି ଅବସ୍ଥିତ,
କେବଳ ମସ୍ତିଷ୍କ ଅଛି ଅନ୍ୟାନ୍ୟ ଜୀବର,
ହୋଇଛନ୍ତି ପଶୁପକ୍ଷୀ ହୃଦୟୁଁ ବଞ୍ଚିତ ।" (କବିତା-ଝଟିକା, ପୃ.୪୪)

କବି ଏଠାରେ ଉଲ୍ଲେଖ କରିବାକୁ ଚାହିଁଛନ୍ତି ଯେ, ପ୍ରାଣୀ ଜଗତରେ କେବଳ ମଣିଷର ମସ୍ତିଷ୍କ ଓ ହୃଦୟ ଏହି ଉଭୟ ଅବୟବ ଅଛି । ଅନ୍ୟାନ୍ୟ ଜୀବମାନଙ୍କର କେବଳ ମସ୍ତିଷ୍କ ଅଛି । 'ହୃଦୟ' ବୋଲି ଯେଉଁ ଶବ୍ଦଟିଏ ଅଛି ତାହା ସେମାନଙ୍କ ପାଖରେ ନାହିଁ । ଏକଥା କବି ଏହି କବିତାରେ ପାଠକମାନଙ୍କୁ ବିଶଦ ଭାବରେ ଦର୍ଶାଇଛନ୍ତି ।

"କବିତା-ଝଟିକା" କାବ୍ୟଗ୍ରନ୍ଥଟି ପାଠକରି ପଦ୍ମଶ୍ରୀ ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ ନିଜର ମନ୍ତବ୍ୟ ଦେଇ ଖଣ୍ଡେ ଚିଠିରେ ସ୍ୱପ୍ନେଶ୍ୱରଙ୍କୁ ଲେଖିଥିଲେ :

(ମନ୍ତବ୍ୟ)

୪.୮.୫୬, କଟକ

ସ୍ୱପ୍ନେଶ୍ୱର ବାବୁ,

*ଆପଣଙ୍କର 'କବିତା-ଝଟିକା' ପଢ଼ିଲି । ରସ ଅଛି, ଭାବ ଅଛି, ଉପଦେଶ ଅଛି, ସୁନ୍ଦର ହୋଇଛି । ବର୍ଷା ରାତି ପଦ୍ୟଟିରେ ଉପମା, ଉତ୍ପ୍ରେକ୍ଷା, ଅର୍ଥାନ୍ତର ନ୍ୟାସ ଭଲ ଅଛି । ପ୍ରକୃତି ପରିଚୟ ମଧ୍ୟ ସୁନ୍ଦର । ରାଷ୍ଟ୍ରଭାଷା କବିତାରେ ଆପଣଙ୍କ ମାତୃଭାଷା ପ୍ରତି ମତ ପ୍ରଦାନ କରିବାର ଦୃଢ଼ତା ଓ ନିର୍ଭୀକତା ବଡ଼ ବେଶୀ । ଲାଖବିନ୍ଧା କବିତାଟି ଅତି ଭଲ ହୋଇଛି । ଭାରି ସମୁଜ୍ଜ୍ୱଳ । ଆପଣ ଭଲ ବର୍ଣ୍ଣନାକାରୀ ଅଟନ୍ତି । ପତ୍ନୀ ପ୍ରତି ଏତେ ଅନୁରକ୍ତି ଏବଂ କୃତଜ୍ଞତା ଆପଣଙ୍କର ଅନେକଙ୍କର ଅନୁକରଣୀୟ । ଜ୍ଞାନରେ ତ ଆପଣ ଭରା ।*

ଆପଣଙ୍କର

ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

## (୪) କାମାୟନୀ (ଅନୁବାଦ) ୧୯୫୬ :

'କାମାୟନୀ' ହେଉଛି ହିନ୍ଦୀ ସାହିତ୍ୟର ସୁବିଖ୍ୟାତ କବି ଜୟଶଙ୍କର ପ୍ରସାଦଙ୍କ ଲିଖିତ ଏକ ଅନବଦ୍ୟ କାବ୍ୟ । ଏହାର ଉତ୍କଳାନୁବାଦ କରିଛନ୍ତି କବି ଭୂଷଣ ସ୍ୱପ୍ନେଶ୍ୱର ଦାଶ ତାଙ୍କର ପରିଣତ ବୟସରେ । 'କାମାୟନୀ' କାବ୍ୟ ସଂପର୍କରେ ଉଚ୍ଚମତ ଦେଇ ସ୍ୱଲିଖିତ ଆତ୍ମକଥା (ମୁଖବନ୍ଧ) ପ୍ରବନ୍ଧରେ ଲେଖିଛନ୍ତି :

"...ଆଧୁନିକ ହିନ୍ଦୀ-ସାହିତ୍ୟ-ଭଣ୍ଡାରର ଅନ୍ୟତର ସମୁଜ୍ଜ୍ୱଳ ରତ୍ନ "କାମାୟନୀ"ର ଉତ୍କଳ-ପଦ୍ୟାନୁବାଦ ସାଂଗ କରି ମୁଁ ଆପଣାକୁ ସୌଭାଗ୍ୟବାନ ମନେକରୁଅଛି । "କାମାୟନୀ" ଖଣ୍ଡିଏ ସଂପୂର୍ଣ୍ଣ ନୂତନ ଧରଣର କାବ୍ୟ । "କାମାୟନୀ"ର ସିଦ୍ଧହସ୍ତ କବି କେବଳ ହିନ୍ଦୀ କବିତାରେ ନୁହେଁ ନିଖିଳ ଭାରତୀୟ ସମସ୍ତ ଭାଷା-କବିତାର ନୂତନ ଧାରାର ପ୍ରଥମ ପଥ-ପ୍ରଦର୍ଶକ ଏବଂ ସେ ଏ ସମସ୍ୟାରେ ସର୍ବଶ୍ରେଷ୍ଠ କବି । ତାଙ୍କର ଉପମାଗୁଡ଼ିକ ଅତ୍ୟନ୍ତ ହୃଦୟସ୍ପର୍ଶୀ ଓ ଏକାନ୍ତ ସ୍ୱାଭାବିକ ।"

ଦେବ ସୃଷ୍ଟିର ବିଧ୍ୱଂସ ଓ ମାନବ ସୃଷ୍ଟିର ଆରମ୍ଭ ଏହି କାବ୍ୟର ବିଷୟବସ୍ତୁ । ଦୀର୍ଘଦିନ ଧରି 'କାମାୟନୀ'ର ଅନୁବାଦ ପରେ ପରେ ଏହାର ସଂଶୋଧନ ପାଇଁ ପ୍ରଥମେ ଡକ୍ଟର ହରେକୃଷ୍ଣ ମହତାବଙ୍କ ନିକଟକୁ ଖଣ୍ଡେ ଚିଠି ଲେଖିଛନ୍ତି । ସେତେବେଳକୁ ମହତାବ ଥିଲେ ବମ୍ବେର ଗଭର୍ଣ୍ଣର । କବି ଭୂଷଣଙ୍କ ପତ୍ରଟି ପାଠକରି ଡଃ ମହତାବ ପ୍ରତିପତ୍ର ଦେଇ ଲେଖିଥିଲେ :

ରାଜଭବନ, ବୋମ୍ବାଇ
୨୨.୫.୫୬

ଶ୍ରୀ କବିଭୂଷଣ ମହାଶୟ,

ଆପଣଙ୍କ ପତ୍ର ପାଇଲି । "କାମାୟନୀ" ଓ ତହିଁର ଅନୁବାଦ ପଠାଇଦେବେ, ମୁଁ ସମୟାନୁସାରେ ଦେଖିବି, ନାନା କାର୍ଯ୍ୟରେ ବ୍ୟସ୍ତ । ତଥାପି ସମୟାନୁସାରେ ଦେଖିବି ।

ଏ ବୟସରେ ଆପଣ ଯେପରି ଉତ୍ସାହ ସହକାରେ ସାହିତ୍ୟ ସାଧନା କରୁଛନ୍ତି, ତାହା ଅତି ପ୍ରଶଂସନୀୟ ଓ ଆମ୍ଭମାନଙ୍କ ପକ୍ଷରେ ଅନୁକରଣୀୟ ।

ଆଶା କରେଁ, ଆପଣ ଭଲ ଥିବେ ।

ଆପଣଙ୍କର
ଶ୍ରୀ ହରେକୃଷ୍ଣ ମହତାବ ।

ପ୍ରତିପତ୍ର ପାଇବା ପରେ 'କାମାୟନୀ'ର ପାଣ୍ଡୁଲିପିକୁ ଆଗ୍ରହ ସହକାରେ କବି ସ୍ୱପ୍ନେଶ୍ୱର ସାହିତ୍ୟିକ ଡଃ ମହତାବଙ୍କ ନିକଟକୁ ପଠାଇଛନ୍ତି । ଡଃ ମହତାବ ମଧ୍ୟ ଆଉ ଅଧିକ କାଳ ବିଳମ୍ବ ନକରି ପାଣ୍ଡୁଲିପିଟିକୁ ଶୀଘ୍ର ସଂଶୋଧନ ପୂର୍ବକ ନିଜର ଅଭିମତ ଲେଖି ପଠାଇଛନ୍ତି । ଗୋଟିଏ ପତ୍ରରେ ଡଃ ମହତାବ, କବି ଭୂଷଣଙ୍କୁ ଲେଖିଥିଲେ :

**GOVERNOR OF BOMBAY**
**RAJ BHAVAN**

୨୯.୬.୫୬

କବିଭୂଷଣ ମହାଶୟ,

ଏଥିସହ ଆପଣଙ୍କ ଲେଖା ଓ 'କାମାୟନୀ' ବହି ପଠାଇଦେଲି । ମୋର ମତ ସଂକ୍ଷେପରେ ଏଥିସହିତ ଦେଇଛି । ଆଶାକରେଁ, ଆପଣଙ୍କ ଦେହ ଭଲ ଥିବ । ଆପଣଙ୍କର ଉତ୍ସାହ ଓ ଉଦ୍ୟମ ଅନୁକରଣୀୟ ।

ଆପଣଙ୍କର
ଶ୍ରୀ ହରେକୃଷ୍ଣ ମହତାବ

ପୁନା ତା ୨୯.୬.୫୬

ସାହିତ୍ୟିକ ମହତାବ ଅନୁଦିତ ପାଣ୍ଡୁଲିପି ପାଠକରି ଯେଉଁ ମନ୍ତବ୍ୟ ଦେଇଥିଲେ ତାହା 'କାମାୟନୀ' କାବ୍ୟର ମୁଖବନ୍ଧ ଭାବରେ ସଂଯୋଜିତ ଓ ଏହି ଅନୁବାଦ କାବ୍ୟଟି ୧୯୫୬ ମସିହା, ଶେଷଆଡ଼କୁ ପ୍ରକାଶିତ । ଏଥିରେ ୧୫ ଗୋଟି କବିତା ସ୍ଥାନ ପାଇଛି । ସ୍ୱପ୍ନେଶ୍ୱରଙ୍କ ଏହି ଅନୂଦିତ କବିତାଗୁଡ଼ିକ ପାଠକଙ୍କୁ ଗଭୀର ଭାବପ୍ରକାଶ କରିବା, ଚିତ୍ତ ବିନୋଦନ କରିବା, ଆନନ୍ଦ ଦେବା ପାଇଁ ତଥା ମାନବ ସମାଜକୁ ମହତ୍ତର କରିବା, ମଣିଷର ଚିନ୍ତା ଓ ଚୈତନ୍ୟକୁ ପ୍ରଶସ୍ତତର କରି ଗଢ଼ି ତୋଳିବା ତାଙ୍କ ସୃଷ୍ଟି ପ୍ରତ୍ୟୟର ମୁଖ୍ୟ ଲକ୍ଷ୍ୟ । ଅନୁବାଦ କବିତା ବ୍ୟତୀତ ତାଙ୍କର ମୌଳିକ କବିତାମାନଙ୍କରେ ମଧ୍ୟ ସ୍ୱଷ୍ଟ ଜୀବନଚିତ୍ର ସେସବୁ ଗୌରବାନ୍ୱିତ ଭାବେ ସଂଗୋପିତ । ଏହାଦ୍ୱାରା ତାଙ୍କ କାବ୍ୟାବଳୀ ପଶ୍ଚିମ ଓଡ଼ିଶାରେ ପରିଚିତ । 'କାମାୟନୀ'ର ଓଡ଼ିଆ ଅନୁବାଦ କିପରି ମଧୁରତର ହୋଇଛି ପାଠକଙ୍କ ପାଇଁ ଏଠାରେ ଦୁଇଟି ପଦ ଦିଆଗଲା :

''କର୍ମଯଜ୍ଞରେ ହିଁ ଜୀବନର ସବୁ
ସ୍ୱପ୍ନର ସ୍ୱରଗ ମିଳିଯିବ ।
ଏହି ବିପିନରେ ମାନସର
ଆଶାର କୁସୁମ ଫୁଟିଯିବ ।
ପରନ୍ତୁ ବନିବ କିଏ ପୁରୋହିତ ?
ଏବେ ଏ ପ୍ରଶ୍ନ ନୂଆଁ ଅଟେ ।
କେଉଁ ବିଧାନେ କରିବି ଏହି ଯଜ୍ଞ
ପଥଟି ଗଲା କେଉଁପଟେ ।
ଶ୍ରଦ୍ଧା ! ପୁଣ୍ୟ–ପ୍ରାପ୍ୟ ଅଟଇ ମୋହର
ସେହି ଅନନ୍ତ ଅଭିଳାଷ ।

ପୁନଶ୍ଚ ଏହି ନିର୍ଜନରେ ଖୋଜିବି
ଆଉ କାହାକୁ କରି ଆଶ ।''
(କାମାୟନୀ–୧୯୫୬,ପୃ.୯୪)

''କାମାୟନୀ'' କାବ୍ୟଖଣ୍ଡିକ ପ୍ରକାଶିତ ହେବା ପରେ ପରେ ଓଡ଼ିଶାର ବହୁ କବି, ଲେଖକ, ସାହିତ୍ୟିକ ଓ ସମ୍ପାଦକମାନଙ୍କର ଦୃଷ୍ଟି ଆକର୍ଷଣ କରିଛି । ଏହି ଅନୁବାଦ ଗ୍ରନ୍ଥଟି ମଧ୍ୟ ସ୍ୱପ୍ନେଶ୍ୱରଙ୍କୁ ବିଶେଷ ଖ୍ୟାତି ଆଣିଦେଇଛି । ସ୍ୱପ୍ନେଶ୍ୱର ମଧ୍ୟ ଶତାଧିକ ପୁସ୍ତକ ଉପହାର ସ୍ୱରୂପ ବାଣ୍ଟି ଦେଇଛନ୍ତି । ତନ୍ମଧ୍ୟରେ ତା ୨୧.୧୦.୧୯୫୬ ମସିହାରେ ଖଣ୍ଡେ କବି ଡକ୍ଟର ମାୟାଧର ମାନସିଂହଙ୍କୁ ଓ ତା ୨୭.୧୨.୧୯୫୬ ରେ ବିଖ୍ୟାତ୍ ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କୁ ଖଣ୍ଡେ ଉପହାର ଦେଇଛନ୍ତି ।

## (୫) ଗାନ୍ଧୀବୋଲି (୧୯୫୮)

ସ୍ୱାଧୀନତା ସଂଗ୍ରାମର ଅଗ୍ରପଥିକ, ଜାତିର ଜନକ ପୂଜ୍ୟ ମହାତ୍ମାଗାନ୍ଧୀଙ୍କ ମୂଲ୍ୟବାନ ବାଣୀ ଓ ପରାମର୍ଶ ଆମ୍ଭ ସମସ୍ତ ବିଶ୍ୱବାସୀଙ୍କ ପାଇଁ ଯେପରି ଶିକ୍ଷଣୀୟ ସେହିପରି ଉପାଦେୟ ଓ ଅନବଦ୍ୟ । ଭାରତରେ ଦେଶବ୍ୟାପୀ ସ୍ୱାଧୀନତା ଆନ୍ଦୋଳନ ଚାଲିଥିବାବେଳେ ଗାନ୍ଧିଜୀଙ୍କ ରଚନା ଓ ବକ୍ତୃତା ଭାରତର ପ୍ରାୟ ସମସ୍ତ ପ୍ରଦେଶର ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହେଉଥିଲା । ଏକଦା କବିଭୂଷଣ ସ୍ୱପ୍ନେଶ୍ୱର ନିଜ ସହଧର୍ମିଣୀଙ୍କ ସହିତ କୌଣସି କାରଣବଶତଃ ବୌଦ୍ଧରେ ଅବସ୍ଥାନ କାଳରେ ଖଣ୍ଡିଏ ମାସିକ ହିନ୍ଦୀ ପତ୍ରିକା ପାଠ କରିବାର ସୁଯୋଗ ଲାଭ କରିଥିଲେ । ଯେଉଁଥିରେ କି ଗାନ୍ଧିଜୀଙ୍କ ରଚନାବଳୀ ସହିତ ତାଙ୍କର ଭାଷଣ ଆଦି ପ୍ରକାଶିତ ହୋଇଥିଲା । ତାହା ଉଭୟ ପତିପତ୍ନୀଙ୍କର ଗଭୀର ଦୃଷ୍ଟି ଆକର୍ଷଣ କରିଛି ଏବଂ ଗାନ୍ଧିଜୀଙ୍କ ସେହି ବିଚାରଧାରାକୁ, ଗାନ୍ଧିଜୀଙ୍କ ସେହି ଉପଦେଶାତ୍ମକ ମନ୍ତ୍ରଗୁଡ଼ିକୁ ଓଡ଼ିଆରେ ପଦ୍ୟାକାରରେ ରଚନ କରି ପୁସ୍ତକର ନାମକରଣ କରିଛନ୍ତି ''ଗାନ୍ଧୀ ବୋଲି'' । ଏହି କବିତାଗ୍ରନ୍ଥଟି ସନ୍ ୧୯୫୮ ମସିହାରେ ପ୍ରକାଶିତ ହୋଇଛି ଓ ଏହାର ପ୍ରକାଶକ ଥିଲେ କବି ସ୍ୱୟଂ ନିଜେ । ବତିଶ ପୃଷ୍ଠାର ଏହି କ୍ଷୁଦ୍ରକାବ୍ୟଟି ନବାକ୍ଷରୀ ବୃତ୍ତରେ ରଚିତ । ''ଗାନ୍ଧୀବୋଲି'' ପୁସ୍ତକର କେତେକାଂଶ ଏଠାରେ ଉଦ୍ଧାର କରାଗଲା :

''ସ୍ୱଧର୍ମେ ଆଦର ଯେସନ । ଅନ୍ୟଧର୍ମେ କର ତେସନ ।।
ପରଧର୍ମେ ସହନଶୀଳ । ନୁହନ୍ତି ମନୁଷ୍ୟ ସକଳ ।।
ଆସ୍ତେୟ ଶବ୍ଦ ଅର୍ଥ ଟୀକା ନୁହେଁ ଚୋରି କରିବା ଏକା ।।
ଲୋଡ଼ା ଯା' ନୁହଇ ଆତ୍ମରି । ନେବା ରଖିବା ସୁଦ୍ଧା ଚୋରି ।।
ଚୋରି କର୍ମରେ ହିଂସା ଭାବ । ସମ୍ପୂର୍ଣ୍ଣ ରୂପେ କରେ ଠାବ ।।
ସଭିଙ୍କି ପ୍ରିୟ କରିବାର । ଶକତି ହରାଏ ଯେ ନର ।।

ସର୍ବସ୍ୱ ହରାଏ ସେ ଜାଣ । ଏ ନୀତି ଅଟଇ ନିଦାନ ।।
ବହୁଜଳ ବିନ୍ଦୁ ସମଷ୍ଟି କରେ ଯଥା ସମୁଦ୍ର ସୃଷ୍ଟି ।।
ତଥା ପ୍ରତ୍ୟେକ ଲୋକ ସହ ମିତ୍ରତା ସ୍ଥାପି ଅହରହ ।।
ମିତ୍ରତା–ସିନ୍ଧୁ ଆମ୍ଭେମାନେ । ହୋଇପାରିବା ଧରାଧାମେ ।।
ପ୍ରତ୍ୟେକ ଲୋକ ଆନଠାରେ । ଯେବେ ମିତ୍ରତା ସ୍ଥାପିପାରେ ।।
ତେବେ ଏ ବିଶ୍ୱର ରୂପଟି । ଯାଆନ୍ତା ଅବଶ୍ୟ ପାଲଟି ।। (ପୃ.୧/୨)

ମୋଟ ଉପରେ କହିବାକୁ ଗଲେ ‘‘ଗାନ୍ଧୀ ବୋଲି’’ କାବ୍ୟଟି ହେଉଛି ସଂପୂର୍ଣ୍ଣ ରୂପରେ ଏକ ଉପଦେଶାମୃତ କରିବା ।

## (୬) କବିତା–ପେଟିକା

ଶ୍ରୀ ଚିନ୍ତାମଣି ମିଶ୍ରଙ୍କ ‘ନବଜୀବନ ପ୍ରେସ୍’ କଟକରୁ ୧୯୫୯ମସିହାରେ ଏହି କାବ୍ୟଗ୍ରନ୍ଥଟି ମୁକ୍ତି ଲାଭ କରେ । ଏଥିରେ ଦୀର୍ଘ ସାତଟି କବିତା ଓ ଗୋଟିଏ କ୍ଷୁଦ୍ର ପ୍ରବନ୍ଧ ସ୍ଥାନୀତ । ଏଥିରେ ଯେଉଁ ସାତଟି କବିତା ସଂଯୋଜିତ ହୋଇଛି–ପୃଥିବୀ ପ୍ରସିଦ୍ଧ ସାତଜଣ ମହତ୍ମାଙ୍କ ମହିମା ଏଥିରେ ବର୍ଣ୍ଣିତ ହୋଇଛି । ସେମାନେ ହେଲେ :

୧. ବୁଦ୍ଧଦେବ :
୨. ଶଙ୍କରାଚାର୍ଯ୍ୟ :
୩. ଶ୍ରୀଚୈତନ୍ୟ :
୪. ମହାବୀର ବର୍ଦ୍ଧମାନ :
୫. ରାୟ ରାମାନନ୍ଦ :
୬. ସନ୍ଥକବୀର :
୭. ଗୁରୁନାନକ :

ପୁସ୍ତକର ଶେଷରେ ‘ମୋର ଧର୍ମଜ୍ଞାନ’ ନାମକ ଏକ କ୍ଷୁଦ୍ର ପ୍ରବନ୍ଧ ଏଥିରେ ସନ୍ନିବେଶିତ ହୋଇଛି । ଏହି ପୁସ୍ତକର ସମସ୍ତ କବିତା ନବାକ୍ଷରୀ ବୃତ୍ତରେ ରଚିତ । ଏହି କବିତାଗ୍ରନ୍ଥଟିକୁ କବି ତାଙ୍କର ଦ୍ୱିତୀୟ ସୁପୁତ୍ର ସ୍ୱର୍ଗତ ଶ୍ରୀବତ୍ସଦାଶଙ୍କୁ ଉତ୍ସର୍ଗ କରି ଦେଇଛନ୍ତି । ‘ଉତ୍ସର୍ଗପତ୍ର’ରେ ଲେଖିଛନ୍ତି :

ପ୍ରିୟ ସ୍ୱର୍ଗତ ଶ୍ରୀବତ୍ସ !

ଆମ୍ଭର ସଂସାର–ଜୀବନ–ତରୁର ଛେଦକ କୁଢ଼ାରୀ ସମୂହ ମଧ୍ୟରେ ତୁ ସୁତୀକ୍ଷ୍ଣ କୁଢ଼ାରୀ ସ୍ୱରୂପ ହୋଇଥିଲୁ । x x x ପ୍ରେସ୍ କାର୍ଯ୍ୟରେ ତୋର ଅସାଧାରଣ କୃତିତ୍ୱ ଥିଲା । ‘ସାଧନା’ ଓ ‘ହୀରାଖଣ୍ଡ’ ପତ୍ରିକାର ପରିଚାଳକ ରୂପେ ତୁ ସମଗ୍ର ଉତ୍କଳରେ ପରିଚିତ ହୋଇଥିଲୁ x x x । ତୋତେ ଝୁରି ଝୁରି ତୋ’ର ମା’ ପ୍ରାଣତ୍ୟାଗ

କରିଥିଲା । ଆଜି ତୋର ସେହି ଦୁଃଖିନୀ ମା'ର ଚତୁର୍ଥ ବାର୍ଷିକ ଶ୍ରାଦ୍ଧ ଦିବସ । ତୁମ୍ଭ ମା' ପୁଅ ଦୁହିଁଙ୍କ ସ୍ମୃତିରକ୍ଷା କଳ୍ପେ ମୋହର ଦୁଃଖାବସରରେ ଲିଖିତ ଏହି ଲେଖା ଖଣ୍ଡିକ "କବିତା–ପେଟିକା"ରେ ସଞ୍ଚି ରଖିଲି ।

ଇତି

ତା ୧୦.୪.୧୯୫୯ ରିଖ ତୋର ଅଭାଗା ପିତା

"କବିତା–ପେଟିକା"ର ପ୍ରଥମ କବିତା 'ବୁଦ୍ଧଦେବ' ରେ କବିଭୂଷଣ ମହାଶୟ ଲେଖିଛନ୍ତି :

"ନମସ୍ତେ ବୁଦ୍ଧ ଶାକ୍ୟ ସିଂହ ।
ନମସ୍ତେ ପୁରୁଷଙ୍କ ସିଂହ ।।
କପିଳବାସ୍ତୁ–ଯୁବଭୂପ ।
ଜୟହେ ବିଷ୍ଣୁଙ୍କ ସ୍ୱରୂପ ।।" (ପୃ. ୨)

ଏହି ପଦଟିରେ କବି ଦର୍ଶାଇଛନ୍ତି ଯେ ବୁଦ୍ଧଙ୍କୁ ଚତୁର ବ୍ରାହ୍ମଣମାନେ ବିଷ୍ଣୁଙ୍କର ନବମ ଅବତାର ରୂପେ ମାନି ନେଇଥିଲେ । ପୁରୀରେ ବୌଦ୍ଧଧର୍ମର ପ୍ରଭାବ ଓ ପ୍ରତିଷ୍ଠା ବର୍ତ୍ତମାନ ସୁଦ୍ଧା ରହିଛି । ଦ୍ୱିତୀୟ କବିତା "ଶଙ୍କରାଚାର୍ଯ୍ୟ" କବିତାରେ ଜଗଦ୍‌ଗୁରୁ ଚିରନମସ୍ୟ ଆଦି ଶଙ୍କରାଚାର୍ଯ୍ୟଙ୍କୁ ସ୍ତୁତି କରି ଲେଖିଛନ୍ତି :

"ଜୟ ହେ ଆଚାର୍ଯ୍ୟଶଙ୍କର ।
ଜୟହେ ସନ୍ନ୍ୟାସୀ ପ୍ରବର ।।
ନମସ୍ତେ ହେ ପରିବ୍ରାଜକ ।
ବ୍ରାହ୍ମଣ ଧର୍ମ–ଉଦ୍ଧାରକ ।।
ଆହେ ଆବାଲ୍ୟ ବ୍ରହ୍ମଚାରୀ ।
ଚାରିବେଦର ଭାଷ୍ୟକାରୀ ।।
ଭାରତେ ଧର୍ମର ବିଭ୍ରାଟ୍ ।
ଭାଙ୍ଗିବାକୁ ହେଲ ପ୍ରକଟ ।।
କଲ ଧର୍ମର ଅଭିଯାନ ।
ପୁଣି ଶୁଭିଲା ବେଦଗାନ ।।" (ପୃ. ୫–୬)

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପରିଚୟ ଦେଇ 'ଚୈତନ୍ୟ' କବିତାରେ କବି ସ୍ୱପ୍ନେଶ୍ୱର ଲେଖିଛନ୍ତି :

"ଜଗନ୍ନାଥ ମିଶ୍ର ଭୂସୁର ।
ନିବାସ ଥିଲା ଯାଜପୁର ।।
ଶଚୀ ତାଙ୍କ ପତ୍ନୀଙ୍କ ନାମ ।
ବିଦ୍ୟାର୍ଥେ ନବଦ୍ୱୀପ ଧାମ ।।

ସେଠାରେ କଲେ ସେ ବସତି ।
ଚୈତନ୍ୟ ତାହାଙ୍କ ସନ୍ତତି ।।
ବାଲ୍ୟକାଳରେ ତାଙ୍କ ନାମ ।
ନିମାଇଁ, 'ଗୌରାଙ୍ଗ' ବିଦ୍ୱାନ ।।
''ତାଙ୍କର ଥିଲେ ବେନି ନାରୀ ।
କିନ୍ତୁ ସେ ନୋହିଲେ ସଂସାରୀ ।।
ସନ୍ନ୍ୟାସ ଧର୍ମେ ଅନୁରାଗ ।
ବହି ସେ ଗୃହ କଲେ ତ୍ୟାଗ ।।
ଚବିଶ ବର୍ଷ ବୟସରେ ।
ଭ୍ରମିଲେ ସନ୍ନ୍ୟାସୀ ବେଶରେ ।।
ଭେଦଭାବ ଦୂର କରଣେ ।
ପ୍ରଚାର କଲେ ସଂକୀର୍ତ୍ତନେ ।।'' (ପୃ. ୭–୮)

ଏଠାରେ ସୂଚନାଯୋଗ୍ୟ ଯେ, ଶ୍ରୀଚୈତନ୍ୟ ୧୪୮୫ ଖ୍ରୀ: ରେ ଜନ୍ମଲାଭ କରି ୧୫୩୩ ଖ୍ରୀ:ରେ ପୁରୀଧାମରେ ଦେହତ୍ୟାଗ କରିଥିଲେ । ତାଙ୍କର ଜୀବନକାଳ ମଧ୍ୟରେ ସେ ଓଡ଼ିଶାରେ ଦୀର୍ଘ ୧୮ ବର୍ଷ ଓ ଭାରତର ଅନ୍ୟାନ୍ୟ ପ୍ରଦେଶରେ ୬ ବର୍ଷ ଧରି ଧର୍ମପ୍ରଚାର କରିଥିଲେ । ଠିକ୍ ସେହିପରି 'ମହାବୀର ବର୍ଦ୍ଧମାନ', 'ରାୟ ରାମାନନ୍ଦ', 'କବୀର', 'ନାନକ' ପ୍ରଭୃତି କବିତାରେ ରହିଛି ନୂତନ ଭାବ ସଂକେତ । 'କବିତା-ପେଟିକା'ରେ ସ୍ଥାନୀତ ହୋଇଥିବା କବିତାଗୁଡ଼ିକର ଭାଷା ସରଳ ଅଥଚ ଶୁଦ୍ଧ । ସର୍ବୋପରି ତାଙ୍କର ପ୍ରତ୍ୟେକ କବିତାରେ ଭାବ ଓ ଭାଷାର ଭିନ୍ନ ଭିନ୍ନ ପ୍ରୟୋଗ ଦେଖିବାକୁ ମିଳେ ।

## (୭) ଆସୁଁ ବା ଅଶ୍ରୁ :

'କାମାୟନୀ' ପରି 'ଆସୁଁ' ମଧ୍ୟ ହିନ୍ଦୀକବି ଜୟଶଙ୍କର ପ୍ରସାଦଙ୍କର ଅନ୍ୟଏକ ବିଶିଷ୍ଟ ରଚନା । ଅବଶ୍ୟ ଏହା ତ କାବ୍ୟ ନୁହେଁ, ଗୋଟିଏ ଦୀର୍ଘ କବିତା ମାତ୍ର । ଏହି ପୁସ୍ତକଟି ୧୯୫୯ ମସିହାରେ କଟକ, 'ନବଜୀବନ' ପ୍ରେସ୍‌ରେ ମୁଦ୍ରିତ ହୁଏ । ଏହାର ପ୍ରକାଶକ ଥିଲେ ସ୍ୱୟଂ କବିଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀ ବିଜୟ କେତନ ଦାଶ । 'ଆସୁଁ' ରେ ସ୍ଥାନୀତ ହୋଇଥିବା କବିତାଗୁଡ଼ିକ ମୁଖ୍ୟତଃ ଗଭୀର ଆଧ୍ୟାତ୍ମିକ ଚିନ୍ତା ସହିତ ଦର୍ଶନଶାସ୍ତ୍ରର ସୁବିମଳ ପରିଚୟ ମିଳିଥାଏ । 'ଆସୁଁ' କାବ୍ୟର ଆରମ୍ଭରେ 'ଉପକ୍ରମଣିକା' ନାମରେ ଗୋଟିଏ କବିତା ଅଛି । ଯେଉଁଥିରେ ସେ ନିଜର ଅତୀତ ଜୀବନ କଥା, ପିତା, ମାତା, ଭ୍ରାତା, ବଧୂ, ପୁତ୍ରକନ୍ୟା ତଥା ନିଜର ପ୍ରିୟତମା ପତ୍ନୀଙ୍କୁ ହରାଇଥିବାର କଥା ସ୍ମରଣ କରି ଲେଖିଛନ୍ତି । କବିଙ୍କ ଭାଷାରେ :

''ସଂସାର-ଜଞ୍ଜାଳ- ତୀବ୍ର କଷାଘାତେ
ଅତୀତ ଜୀବନ ସାରା ।
ଗିରି–ଝରବତ ବେନି ନୟନରୁ
ଝରି ଉଷ୍ଣ ଅଶ୍ରୁ–ଧାରା ।''
ଗଲାଣି ତ ଶୁଖି ହୃଦ–ସରୋବର
ରହିଛି ରକ୍ତିମା ନେତ୍ରେ ।
ମୋ ଜନ୍ମ ବାସରେ କି ସଞ୍ଚିବି ଆଉ
ଜ୍ଞାତି–ବନ୍ଧୁ–ମନ–କ୍ଷେତ୍ରେ ?
ଯାଇଥିଲେ ପିତା ଯାଇଥିଲେ ମାତା
ଭ୍ରାତା, ବଧୂ, ପୁତ୍ର, କନ୍ୟା ।
କେତେ ଆଶା ଥିଲା ଯାହାଙ୍କର ପ୍ରତି
ହେବ ବୋଲି ଧନ୍ୟ ଧନ୍ୟା ।।
ନିର୍ମମ ନିୟତି ନ ବୁଝିଲା କିଛି
ଘେନିଗଲା ବାଛି ବାଛି ।
ଶେଷେ ନେଇଗଲା ପ୍ରାଣସଙ୍ଗିନୀକୁ
ହୃଦ–ବନେ ଅଗ୍ନିଲାଞ୍ଚ ।।''

ଏଠାରେ ଯେଉଁ ପୁତ୍ର, କନ୍ୟାଙ୍କ କଥା କୁହାଯାଇଛି, ସେମାନେ ହେଲେ କବିଙ୍କ ଦ୍ୱିତୀୟ ପୁତ୍ର ଶ୍ରୀବତ୍ସ ଦାଶ, ଯିଏ କି ତା ୨୫.୧୧.୧୯୪୨ ମସିହାରେ ସ୍ୱର୍ଗାରୋହଣ କରିଥିଲେ ଏବଂ କବିଙ୍କ କନ୍ୟା ହେଉଛନ୍ତି ସତ୍ୟବତୀ ପତି । ଏହି ମହାଶୟା ଗତ ତା ୬.୪.୧୯୫୦ ରେ ଇହଲୀଳା ସମ୍ବରଣ କରିଥିଲେ ।

'ଆଁସୂ' କବିତାର ଆରମ୍ଭରେ କବିଭୂଷଣ ଲେଖିଛନ୍ତି :

''ଏହି, କରୁଣା–କଳିତ ହୃଦୟରେ ଏବେ
ବିକଳ ରାଗିଣୀ କିପାଁ ବାଜେ ।
କିସେ, ହାହାକାର- ସ୍ୱର ସମୂହ ମଧ୍ୟରେ
ଅସୀମ ବେଦନା ଗର୍ଜି ରାଜେ ?''

(ଆଁସୂ ବା ଅଶ୍ରୁ–୧୯୫୯, ପୃ.୧)



## ତୃତୀୟ ଅଧ୍ୟାୟ

# ଐତିହାସିକ ସ୍ୱପ୍ନେଶ୍ୱର ଦାଶ

ସ୍ୱପ୍ନେଶ୍ୱର ଦାଶ ବିବିଧ ରଚନାବଳୀର ଲେଖକ । ସେ ଜଣେ ଉଚ୍ଚକୋଟୀର ଐତିହାସିକ ମଧ୍ୟ । ନିଜେ ତରୁଣ ଥିବା ସମୟରୁ ହିଁ ସମ୍ବଲପୁର ଇତିହାସ, ବିଶେଷକରି ପଶ୍ଚିମ ଓଡ଼ିଶାର ଇତିହାସ ସଂପର୍କରେ ଅଧିକ ଜାଣିବା ପାଇଁ ନିଜର ଗବେଷଣା ଚଳାଇ ଆସିଥିଲେ । ଏ ସଂପର୍କରେ ତାଙ୍କ ଲିଖିତ ପ୍ରଥମ ଗବେଷଣା ପୁସ୍ତକ ହେଉଛି, ''ସମ୍ବଲପୁର ଇତିହାସ ଦର୍ପଣ'' । ଏହି ଗ୍ରନ୍ଥଟି ସମ୍ଭବତଃ ୧୯୦୧ ରୁ ଆରମ୍ଭ କରି ୧୯୦୫ ମସିହା ମଧ୍ୟ ଭାଗରେ ଶେଷକରି କବିବର ରାଧାନାଥ ରାୟଙ୍କ ପାଖକୁ ପଠାଇଛନ୍ତି । କବି ରାଧାନାଥ ପାଣ୍ଡୁଲିପିଟି ପାଠ କରି ନିଜର ମନ୍ତବ୍ୟ ଦେଇ ଲେଖିଥିଲେ :

**ମନ୍ତବ୍ୟ**

*ଶାରୀରିକ ଅସୁସ୍ଥତା ନିବନ୍ଧନ ଏ ପୁସ୍ତକ ମୁଁ ରୀତିମତ୍ ସଂଶୋଧନ କରିବାକୁ ଅକ୍ଷମ ।*

*ପୁସ୍ତକର ପ୍ରାୟ ସମୁଦାୟ ଅଂଶ ମୁଁ ପାଠକରି ସଂପ୍ରୀତ ହୋଇଅଛି । ସମ୍ବଲପୁର ସମ୍ବନ୍ଧରେ ଅନେକ ଜ୍ଞାତବ୍ୟ ବିଷୟ ଏଥିରେ ସନ୍ନିବେଶିତ ହୋଇଅଛି ।*

*ପୁସ୍ତକର କେତେକ ସ୍ଥାନରେ ଭାଷା ଏବଂ ବ୍ୟାକରଣଗତ ଅଶୁଦ୍ଧି ଅଛି । ଉପଯୁକ୍ତ ବ୍ୟକ୍ତି ହସ୍ତରେ ସେଗୁଡ଼ିକ ସଂଶୋଧନ କରାଇ ଗ୍ରନ୍ଥାକାର ଏହାକୁ ମୁଦ୍ରିତ କରାଇଲେ ଏହା ସର୍ବସାଧାରଣର ବ୍ୟବହାରର ଉପଯୋଗୀ ହୋଇପାରିବ ।*

ସ୍ୱା/–ଶ୍ରୀ ରାଧାନାଥ ରାୟ

କଟକ

୧.୬.୦୫

ଐତିହାସିକ ସ୍ୱପ୍ନେଶ୍ୱର ଦାଶଙ୍କ ''ସମ୍ବଲପୁର ଇତିହାସ ଦର୍ପଣ'' ପୁସ୍ତକଟିର ନାମ ପରିବର୍ତ୍ତିତ ହୋଇ ପରବର୍ତ୍ତୀ କାଳରେ ''ସମ୍ବଲପୁର ଇତିହାସ'' ନାମ ଧାରଣ କରି ଏହାର କେତେକାଂଶ ତତ୍କାଳୀନ ''ହୀରାଖଣ୍ଡ'' ପତ୍ରିକାରେ ପ୍ରକାଶିତ ହୋଇଛି । ଓଡ଼ିଶାର କେତେକ ଐତିହାସିକଙ୍କଠାରୁ ଶୁଣିବାକୁ ମିଳେ ଯେ ''ସମ୍ବଲପୁର ଇତିହାସ''

ପୁସ୍ତକାକାରରେ ମୁଦ୍ରିତ ହୋଇଛି ସମ୍ଭବତଃ ସନ୍ ୧୯୫୮ ମସିହା ଆଡ଼କୁ । ତେବେ ସେ ସଂପର୍କରେ କିଛି କୁହାଯାଇ ପାରିବ ନାହିଁ । ତାଙ୍କର ଇତିହାସ ସଂପର୍କିତ ପୁସ୍ତକ ଗୁଡ଼ିକ ହେଉଛି :

୧. ସମ୍ବଲ ମନସା
୨. କର୍ମବୀର ବାଲ୍‌କୀ ଦାଶ
୩. ସମ୍ବଲପୁର ଇତିହାସ
୪. ଚୌହାଣବୀର ସୁରେନ୍ଦ୍ର ସାଏ

ରମ୍ଭେଲା ଗ୍ରାମ ମହାନଦୀ ବକ୍ଷରେ ନିର୍ବାପିତ ହୋଇଯାଇଛି । ଏଠାରେ ମଧ୍ୟ ଦିନେ ସ୍କୁଲ ଘର ଥିଲା, ପୋଷ୍ଟ ଅଫିସ ଥିଲା, ଥାନା ଥିଲା । ସକଳ ପ୍ରକାର ସୁବିଧା ସୁଯୋଗ ଥିଲା ଏହି ରମ୍ଭେଲା ଗ୍ରାମରେ । ୧୯୦୭ ମସିହା, ଗଣେଶ ଚତୁର୍ଥୀଦିନ ଜାତୀୟବୀର ସ୍ୱାଧୀନତା ସଂଗ୍ରାମୀ ବୀର ସୁରେନ୍ଦ୍ରସାଏଙ୍କ ସୁପୁତ୍ର ମିତ୍ରଭାନୁ ସାଏ ନିମନ୍ତ୍ରିତ ହୋଇ ରମ୍ଭେଲା ଗ୍ରାମକୁ ଆସିଥାନ୍ତି । ସେଠାରେ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଥିଲା । ଏହାର ପ୍ରମୁଖ ନେତୃତ୍ୱ ନେଇଥିଲେ ନିଜେ ସ୍ୱପ୍ନେଶ୍ୱର ଦାଶ । ଏ ସଂପର୍କରେ ନିଜେ କହିଛନ୍ତି :

*"ରମ୍ଭେଲା ସ୍କୁଲର ବିନାୟକ ପର୍ବୋତ୍ସବରେ ୧୯୦୭ ମସିହାରେ ଏହି କ୍ଷୁଦ୍ର ପୁସ୍ତକର ଲେଖକ ମିତ୍ରଭାନୁ ସାଏଙ୍କୁ ମୃଦଙ୍ଗ ସ୍କନ୍ଧରେ ଦର୍ଶନ କରିବାର ସୁଯୋଗ ପାଇ ନିଜ ଜୀବନକୁ କୃତାର୍ଥ କରିପାରିଥିଲା । ସେହିବର୍ଷ ରମ୍ଭେଲାର "ଗଣେଶଯାତ୍ରା" ରେ ପୁରୀ ରଥପର୍ବ ପରି ଭିଡ଼ ହୋଇଥିଲା । ସେହି ୬୮ ବର୍ଷ ବୟସ୍କ ମୃଦଙ୍ଗ ବାଦକ ବୃଦ୍ଧଙ୍କର ଯୁବକ ଦୁର୍ଲ୍ଲଭ ଛ' ଫୁଟ ଉଚ୍ଚତା ବିଶିଷ୍ଟ ସଳଖ ସୁନ୍ଦର ଶରୀର, ଶାଳଦଣ୍ଡ ସଦୃଶ ସୁଦୃଢ଼ ବାହୁଯୁଗଳ ଓ ଯୁବାସଂଘର ଚକ୍ଷୁସଙ୍କାଶ ସତେଜ ସୁଦୀର୍ଘ ନେତ୍ରଦ୍ୱୟ ଦେଖି ଜନସାଧାରଣ ଚୌହାଣବୀର ସୁରେନ୍ଦ୍ରସାଏଙ୍କ ଜୀବନ ପ୍ରତିମୂର୍ତ୍ତିର କଳ୍ପନା କରିପାରିଥିଲେ । ଲେଖକ ସୁରେନ୍ଦ୍ର ସାଏଙ୍କ ଆତ୍ମାର ପ୍ରତିନିଧିଙ୍କ ସହିତ ବାର୍ତ୍ତାଳାପ କରି ସମ୍ବଲପୁରର ପ୍ରଥମ ଜାତୀୟ ସଂଗ୍ରାମର ଅନେକ ତଥ୍ୟ ସଂଗ୍ରହ କରିବାକୁ ସୁଯୋଗ ପାଇଥିଲା ।"*

(ଚୌହାଣବୀର ସୁରେନ୍ଦ୍ରସାଏ ୧୯୫୮, ପୃ.୧୦୬–୧୦୭)

ମିତ୍ରଭାନୁ ସାଏଙ୍କଠାରୁ ସୁରେନ୍ଦ୍ରସାଏଙ୍କ ସଂପର୍କରେ ବହୁ ବିଷୟ ସେ ଶୁଣିବାକୁ ପାଇଛନ୍ତି । ତାଙ୍କ ମନରେ ଜାଗି ଉଠିଛି ଜଣେ ଜାତୀୟବୀରର କୀର୍ତ୍ତି ଓ ତାର ପ୍ରଚାର ପ୍ରସାର ପାଇଁ । ସେଥିପାଇଁ ଦୀର୍ଘକାଳ ସୁରେନ୍ଦ୍ର ସାଏଙ୍କ ଜୀବନ ଓ ଅମ୍ଳାନ ପ୍ରତିଭା ଉପରେ ଗବେଷଣା କରିଛନ୍ତି । ସଫଳ ହୋଇଛନ୍ତି । ତାଙ୍କ ଲେଖନୀର ଅବଦାନ ହେଉଛି ''ଚୌହାଣ ବୀର ସୁରେନ୍ଦ୍ର ସାଏ ।'' ସୁରେନ୍ଦ୍ର ସାଏଙ୍କ ଉପରେ ପ୍ରାମାଣିକ ଗ୍ରନ୍ଥଟିଏ କହିଲେ ଏହି ବହିକୁ ହିଁ ବୁଝାଉଥିଲା । ସୁରେନ୍ଦ୍ର ସାଏଙ୍କ ଉପରେ ତାଙ୍କର ଏହି ବହିଟି ଏକ ମାଇଲ୍‌ଷ୍ଟୋନ୍ । ସ୍ୱପ୍ନେଶ୍ୱର ଦାଶ ହିଁ ସୁରେନ୍ଦ୍ର ସାଏଙ୍କ ପ୍ରଥମ ଜୀବନୀ ଲେଖକ । ''ଚୌହାଣ ବୀର ସୁରେନ୍ଦ୍ର ସାଏ'' ଗ୍ରନ୍ଥଟି ୧୯୫୮ ମସିହାରେ ନବଜୀବନ ପ୍ରେସ୍, କଟକରୁ ପ୍ରକାଶିତ ହୋଇଛି । ସ୍ୱପ୍ନେଶ୍ୱରଙ୍କ ''ଚୌହାଣବୀର ସୁରେନ୍ଦ୍ରସାଏ'' ପୁସ୍ତକରେ ମୋଟ ୩୦ ଗୋଟି ଅଧ୍ୟାୟ ସ୍ଥାନ ପାଇଛି । ସେଗୁଡ଼ିକ ହେଲା :

୧. କୋଶଳ ରାଜ୍ୟ
୨. ବରଗଡ଼ ରାଜ୍ୟ
୩. ସମ୍ବଲପୁର ରାଜ୍ୟ
୪. ସମ୍ବଲପୁର ରାଜବଂଶ
୫. ରହସ୍ୟ
୬. ବିପ୍ଳବ ଯଜ୍ଞାରମ୍ଭ
୭. ସମ୍ବଲପୁର ରାଜଗାଦି
୮. ରାମପୁର ଯୁଦ୍ଧ
୯. ଶାସକ ପରିବର୍ତ୍ତନ
୧୦. ସିପାହୀ ବିଦ୍ରୋହ
୧୧. ବିପ୍ଳବଯଜ୍ଞର ନୂତନ ସଂସ୍କାର
୧୨. ଜେଲ୍ ଫେରାରୀ ସୁରେନ୍ଦ୍ର
୧୩. ଗଡ଼ପାଟୀ ଯୁଦ୍ଧ
୧୪. ଝରଘାଟୀ ଯୁଦ୍ଧ
୧୫. ଶିରିଗିରିଆ ଘାଟୀ ଯୁଦ୍ଧ
୧୬. ଶିଙ୍ଗରା ପାଟୀ
୧୭. ଡେବ୍ରିଗଡ଼ ଘାଟୀ
୧୮. ଗଣ୍ଡମାରୁ
୧୯. ଇଂରେଜଙ୍କ ଦମନ ନୀତି
୨୦. ଆତ୍ମ ସମର୍ପଣ

୨୧. ବିପ୍ଳବର ଦ୍ୱିତୀୟ ରୂପ
୨୨. ନିମକ୍ ହାରାମ୍ ଜାୟଗିରି
୨୩. ବିଚାର ଓ ଫୈସଲା ସମସ୍ୟା
୨୪. ସୁରେନ୍ଦ୍ର ସାଏଙ୍କ ବ୍ୟକ୍ତିତ୍ୱ
୨୫. ବୃଥା ଦୋଷାରୋପ
୨୬. ଶତବାର୍ଷିକୀ ଉତ୍ସବ
୨୭. ପରିଶିଷ୍ଟ
୨୮. ବଂଶବୃକ୍ଷାବଳୀ
୨୯. କାଗଜ ପତ୍ର
୩୦. ନେତାଗଣ

ଜାତୀୟବୀର ସୁରେନ୍ଦ୍ର ସାଏଙ୍କର ଆର୍ବିଭାବ ହୁଏ ଜାନୁୟାରୀ ୨୩ ତାରିଖ ୧୮୦୯ ଖ୍ରୀଷ୍ଟାବ୍ଦରେ ଏବଂ ତିରୋଭାବ ହୁଏ ଫେବୃୟାରୀ ମାସ ୨୮ ତାରିଖ ୧୮୮୪ ମସିହାରେ । ମାତ୍ର ଯଥାର୍ଥ ବୀରର ମୃତ୍ୟୁ କାହିଁ ? ତାଙ୍କର ମହାନତ୍ୟାଗ, ବୀରତ୍ୱ, ଅଟଳ ବିଶ୍ୱାସ, ଅକ୍ଳାନ୍ତ ପରିଶ୍ରମ ଏବଂ ଜନନୀ ଓ ଜନ୍ମଭୂମିକୁ ବିଦେଶୀ ଶାସକର କବଳରୁ ମୁକ୍ତ କରିବାର ଅପୂର୍ବନିଷ୍ଠା ଓ ସାହସିକତାର ସମୁଚିତ ସମ୍ମାନ ଏ ଦେଶ ତାଙ୍କୁ ଦେଇପାରି ନାହିଁ । ତାହାଙ୍କର ନାମ ଓ କୀର୍ତ୍ତି ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବା ସର୍ବାଦୌ ଉଚିତ । ସୁରେନ୍ଦ୍ର ସାଏଙ୍କ ସଂପର୍କରେ ଉଚ୍ଚ ପ୍ରଶଂସା କରି ଐତିହାସିକ ସ୍ୱପ୍ନେଶ୍ୱର ଦାଶ ଲେଖିଛନ୍ତି :

*"ବୀରେନ୍ଦ୍ର ସୁରେନ୍ଦ୍ର ସାଏଙ୍କୁ ପୃଥିବୀ ପ୍ରସିଦ୍ଧ ମହାବୀର ନେପୋଲିୟନଙ୍କ ସହିତ ତୁଳନା କଲେ ସତ୍ୟର ଅପଳାପ ହେବନାହିଁ; ବରଂ ସୁରେନ୍ଦ୍ରଙ୍କ ବ୍ୟକ୍ତିତ୍ୱ ଅନେକାଂଶରେ ନେପୋଲିୟନଙ୍କ ବ୍ୟକ୍ତିତ୍ୱ ଅପେକ୍ଷା ଉଚ୍ଚତର ହୋଇପାରେ । ସୁରେନ୍ଦ୍ରସାଏଙ୍କ ଯୁଦ୍ଧ ନୈପୁଣ୍ୟ ଦେଖି ଇଂରେଜ ସରକାରଙ୍କ ନାମଜାଦା ସେନାପତିମାନେ ମଧ୍ୟ ଚକିତ ହୋଇଯାଇଥିଲେ । ଜିଲ୍ଲା ଶାସନକର୍ତ୍ତା, କମିଶ୍ନାରୀ ଶାସନକର୍ତ୍ତା ଓ ପ୍ରଦେଶ ଶାସନକର୍ତ୍ତାଙ୍କଠାରୁ ଦେଶ ଶାସନକର୍ତ୍ତାଙ୍କ ପର୍ଯ୍ୟନ୍ତ ସୁରେନ୍ଦ୍ର ସାଏଙ୍କ ପ୍ରଭାବରେ ବିଚଳିତ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଇଥିଲେ । ସେ ତାଙ୍କର ଜୀବନରେ ରାମାୟଣ ଯୁଗର ଲକ୍ଷ୍ମଣ ବା ମହାଭାରତ ଯୁଗର ଅର୍ଜୁନଙ୍କର ପୁରାଣବର୍ଣ୍ଣିତ ଶୌର୍ଯ୍ୟର ସତ୍ୟତା ପ୍ରମାଣିତ କରିଥିଲେ । ରାମଙ୍କର ଚତୁର୍ଦ୍ଦଶବର୍ଷ ବ୍ୟାପି-ବନବାସ-ଜନିତ ଦୁଃଖ ଓ ଯୁଧିଷ୍ଠିରଙ୍କ ଚତୁର୍ବିଂଶ-ବର୍ଷ ବନବାସ-ଘଟିତ-କଷ୍ଟ*

*ସୁରେନ୍ଦ୍ର ସାଏଙ୍କ ଅଦ୍ଭୁତ ପୌରୁଷ ଆଗରେ ବିପୁଳ ବୀର୍ଯ୍ୟ–ଦୃପ୍ତ ବ୍ରିଟିଶ କେଶରୀଙ୍କ ଗର୍ବ ଖର୍ବୀକୃତ ହୋଇଯାଇଥିଲା । ସେ ଅଳ୍ପ ସଂଖ୍ୟକ ସାମାନ୍ୟ ଅସ୍ତ୍ରଶସ୍ତ୍ରଧାରୀ ଆଦିବାସୀ ସୈନିକ ଧରି ପ୍ରବଳ ପରାକ୍ରମୀ ଇଂରେଜ ବାହିନୀର ବଜ୍ରନାଦୀ–ତୋପ ମୁଖରେ ଛିଡ଼ା ହୋଇ ଯୁଦ୍ଧ କୌଶଳରେ ଶତ୍ରୁପକ୍ଷକୁ ସ୍ତବ୍ଧ ଓ ବିକ୍ଷୁବ୍ଧ କରିଦେଇଥିଲେ । ତାଙ୍କର ଆତ୍ମୋତ୍ସର୍ଗର ମୂଳ କାରଣ ଥିଲା–ଦେଶକୁ ପରାଧୀନତାରୁ ମୁକ୍ତ କରିବା । ତତ୍କାଳୀନ ହସ୍ତପଦାବଦ୍ଧ ରାଜପଦ ଲାଭ କରିବା ସକାଶେ ସେ ଲାଳାୟିତ ନ ଥିଲେ । ଇଂରେଜ ସରକାର ତାଙ୍କୁ ସିନେମା ପ୍ରଦର୍ଶିତ ରାଜା କରି ନଥିଲେ ହେଁ, ସେ ଜନସାଧାରଣଙ୍କର ହୃଦୟ ସିଂହାସନରେ ସାର୍ବଭୌମରୂପେ ଉପବେଶନ କରିପାରିଥିଲେ ।''*

(ଚୌହାଣ ବୀରସୁରେନ୍ଦ୍ର ସାଏ ୧୯୫୮, ପୃ. ୧୨୧)

ସୁରେନ୍ଦ୍ର ସାଏଙ୍କ ଜାତୀୟ ଆନ୍ଦୋଳନରେ ଯେଉଁ ବୀରପୁରୁଷଗଣ ଭାଗନେଇଥିଲେ, ସେମାନଙ୍କଠାରେ ଏ ଜାତି ନିଶ୍ଚିତ ଭାବେ ନତମସ୍ତକ । ସେଇମାନଙ୍କ ସଂପର୍କରେ ଐତିହାସିକ ସ୍ୱପ୍ନେଶ୍ୱର ଯାହା ଲେଖିଛନ୍ତି, ତାହା ପ୍ରାମାଣିକ, ମୂଲ୍ୟବାନ ଓ ଆଲୋଚ୍ୟ । ସୁରେନ୍ଦ୍ର ସାଏଙ୍କ ଜାତୀୟ ଆନ୍ଦୋଳନରେ ସଂପୃକ୍ତ ନେତାଗଣ ହେଲେ :

୧. ସମ୍ବଲପୁର ଜାତୀୟ ଆନ୍ଦୋଳନରେ ପ୍ରଧାନତମ ଜନନାୟକ–ଚୌହାଣ ବୀର ସୁରେନ୍ଦ୍ର ସାଏ ।

୨. ବଳରାମ ସିଂହ–ସୁରେନ୍ଦ୍ର ସାଏଙ୍କ ପିତୃବ୍ୟ ।

୩. ଉଦନ୍ତ ସାଏ– ସୁରେନ୍ଦ୍ର ସାଏଙ୍କ ଭାଇ । ଏ ମହାଶୟ ବହୁ ଦୁର୍ଦ୍ଧାନ୍ତ ଓ ବୀର ଥିଲେ ।

୪. ଧ୍ରୁବସାଏ–ସୁରେନ୍ଦ୍ର ସାଏଙ୍କ ଭାଇ ।

୫. ଜାଜ୍ୱଲ ସାଏ–ସୁରେନ୍ଦ୍ର ସାଏଙ୍କ ଭାଇ । ଏହାଙ୍କ ସଂପର୍କରେ ଇତିହାସ ନୀରବ ।

୬. ଛବିଲ ସାଏ– ସୁରେନ୍ଦ୍ର ସାଏଙ୍କ ଚତୁର୍ଥଭାଇ ।

୭. ଉଜ୍ଜ୍ୱଳ ସାଏ– ସୁରେନ୍ଦ୍ର ସାଏଙ୍କ ଭାଇ ।

୮. ଗୋବିନ୍ଦ ସିଂହ–ଏ ମହାଶୟ ଝାର୍‌ସୁଗୁଡ଼ାର ଖର ପୋଷଦାର ।

୯. ନାରାୟଣ ସିଂହ–ଏ ମହାଶୟ ଝାର୍‌ସୁଗୁଡ଼ାର ଗୋବିନ୍ଦ ସିଂହଙ୍କ ପିତୃବ୍ୟ ।

୧୦. ବଳଭଦ୍ର ସିଂହ ଦାଉ–ଏ ମହାଶୟ ଲକ୍ଷ୍ମଣପୁରର ଗଣ୍ଡଜାତୀୟ ଜମିଦାର ଥିଲେ ।

୧୧. ରାୟ ରୂପସିଂହ–

୧୨. କୁଅଁର ସିଂହ– ହଜାରୀବାଗ୍ ଜେଲ୍‌ଖାନା ଭାଂଗି ସୁରେନ୍ଦ୍ର ସାଏଙ୍କୁ ମୁକ୍ତ କରିବାରେ ସାହାଯ୍ୟ କରିଥିଲେ ।

୧୩. ଛକଡ଼ି ମହାପାତ୍ର–ଏ ମହାଶୟ ଗଞ୍ଜାମ ଅଞ୍ଚଳର ଅଧିବାସୀ ।

୧୪. କମଳ ସିଂହଦାଉ–ଲକ୍ଷ୍ମଣପୁରର ନିହତ ଜମିଦାର ବଳଭଦ୍ର ସିଂହ ଦାଉଙ୍କର ଜ୍ୟେଷ୍ଠପୁତ୍ର ।

୧୫. କୁଂଜେଲ ସିଂହ–ସୁରେନ୍ଦ୍ର ସାଏଙ୍କ ଅଙ୍ଗରକ୍ଷକ ରୂପେ ରହିଥିଲେ ।

୧୬. ହାତୀ ସିଂହ–ଏ ମହାଶୟ ଘେଁସ୍‌ର ନିହତ ଜମିଦାରଙ୍କ ବଡ଼ପୁଅ ।

୧୭. ବୈରୀ ସିଂହ– ଏ ମହାଶୟ ଘେଁସ୍ ଜମିଦାରଙ୍କ ସାନପୁଅ ।

୧୮. ମିତ୍ରଭାନୁ ସାଏ–ସୁରେନ୍ଦ୍ର ସାଏଙ୍କ ଏକମାତ୍ର ପୁତ୍ର ।

୧୯. ଗଣେଶ ଉପାଧ୍ୟାୟ–ଏ ସିଂହାବଗା ଗ୍ରାମବାସୀ ଜଣେ ନିରୀହ ବୃଦ୍ଧ ବ୍ରାହ୍ମଣ । ତାଙ୍କର ଦୁଇଟି ପୁଅ–ପୁରୁଷୋତ୍ତମ ଓ ପ୍ରସାଦୀ, ସୁରେନ୍ଦ୍ର ସାଏଙ୍କ ସହଚର ଥିଲେ ।

୨୦. ଲୋକନାଥ ଗୌନ୍ତିଆ– ଏ ମହାଶୟ ରମେଲା, ଅଡ଼ାପରା, କୁମ୍ଭାରବନ୍ଧ ପ୍ରଭୃତି ଗ୍ରାମର ଗୌନ୍ତିଆ ଥିଲେ ।

୨୧. ମୃତ୍ୟୁଞ୍ଜୟ ପାଣିଗ୍ରାହୀ– ଏ ମହାଶୟ ଅର୍ଡ଼ାଗ୍ରାମର ଗୌନ୍ତିଆ ଥିଲେ ଏବଂ ସୁରେନ୍ଦ୍ର ସାଏଙ୍କ ବିପ୍ଳବୀ ଦଳରେ ଯୋଗଦେବା ଫଳରେ ପୋଲିସ୍ ତାଙ୍କୁ ଅର୍ଡ଼ା ଗ୍ରାମରୁ ଏରେଷ୍ଟ କରିନେଇଥିଲେ ।

୨୨. ପଦ୍ମନାଭ ଗୁରୁ–ଏ ମହାଶୟ ସମ୍ବଲପୁର ଗୁରୁ ବଂଶୀୟ ।

୨୩. ମଧୁ ଗୌନ୍ତିଆ–ଲୋଇସିଂହା ଜମିଦାରୀର ଜଣେ ଗୌନ୍ତିଆ ଥିଲେ ।

୨୪. ବାଲ୍‌କି ଦାଶ–''କର୍ମବୀର ବାଲ୍‌କୀ ଦାଶ'' ପୁସ୍ତକରେ ଏହାଙ୍କ ସଂପର୍କରେ ବିଶଦ୍ ଭାବେ ବର୍ଣ୍ଣିତ ହୋଇଛି ।

୨୫. ଦୟାନିଧି ମେହେର–ଏ ନିମକ୍‌ହାରାମ୍‌ର ଅନ୍ୟାନ୍ୟ ନାମ ହେଉଛି– ସତ୍ୟା, ଭୋଳା ଓ ଜୀବଧନ । ଏ ତନ୍ତୀ (ଭୁଲିଆ) ଜାତୀୟ । ଇଂରେଜମାନଙ୍କଠାରୁ ସାମାନ୍ୟ କିଛି ଅର୍ଥ ପାଇଁ ସୁରେନ୍ଦ୍ର ସାଏଙ୍କୁ ବିଶ୍ୱାସଘାତକତା କରି ଧରାଇ ଦେଇଥିଲେ ।

୨୬. ଜୟ ସିଂହ– ଏ ମହାଶୟ ଜଣେ ଲଇଡ଼ା ଗ୍ରାମର ଗ୍ରାମବାସୀ ଓ ପ୍ରଜା । ସେ ସୁରେନ୍ଦ୍ର ସାଏଙ୍କ ବିପ୍ଳବରେ ଯୋଗଦାନ କରିଥିଲେ ।

୨୭. ଧର୍ମସିଂହ– ଏ ମହାଶୟ ସୁରେନ୍ଦ୍ର ସାଏଙ୍କ ପିତା । ସାତଜଣ ପୁତ୍ର ଓ ଏକ କନ୍ୟାଲାଭ କରିଥିଲେ । ଏ ଜଣେ ଧର୍ମ ପରାୟଣ ଓ ଶାନ୍ତି ପ୍ରକୃତିର ବ୍ୟକ୍ତିଥିଲେ ।

୨୮. ରମାଇଦେବ– ରାମଦେବ ବା ରାମଚନ୍ଦ୍ରଦେବ । ଏ ମହାଶୟ କୋଶଳର ଚୌହାଣ ରାଜବଂଶର ପ୍ରଥମ ପୁରୁଷ ।

୨୯. ବଳିଆର ସିଂହ– ଏ ମହାଶୟ ହେଉଛନ୍ତି ହୀରାଖଣ୍ଡ ସାମ୍ରାଜ୍ୟର ପ୍ରତିଷ୍ଠାତା । ପୁରୀ ଗଜପତି ମୁକୁନ୍ଦଦେବ ଏହାଙ୍କ ଶୌର୍ଯ୍ୟର ପରିଚୟ ପ୍ରାପ୍ତହୋଇ ଏହାଙ୍କୁ "ହୀରାଖଣ୍ଡ ଛତ୍ରପତି" ଉପାଧି ଓ "ମେଘାଡମ୍ବର ଛତ୍ର" ସହିତ ସ୍ୱୀୟ ଭଗ୍ନୀଙ୍କୁ ପ୍ରଦାନ କରିଥିଲେ । ଏ ସମ୍ବଲପୁର ଚୌହାଣ ରାଜବଂଶର ଶ୍ରେଷ୍ଠତମ ବୀର ଥିଲେ ।

୩୦. ପୃଥ୍ୱୀରାଜ– ଏ ମହାଶୟ ଭାରତର ଶେଷସ୍ୱାଧୀନ ହିନ୍ଦୁ ସମ୍ରାଟ୍ ।

୩୧. ନୀଳାମ୍ବର ସିଂହଦାଉ– ଏ ମହାଶୟ ହେଉଛନ୍ତି ଲକ୍ଷ୍ମଣପୁର ଜମିଦାର କମଳସିଂହ ଦାଉଙ୍କର ଭାଇ ଓ ସୁରେନ୍ଦ୍ର ସାଏଙ୍କ ବିପ୍ଳବୀ ସେନାର ଅନ୍ୟତମ ସେନାପତି ଥିଲେ ।

ଐତିହାସିକ ସ୍ୱପ୍ନେଶ୍ୱର ଦାଶଙ୍କ "ଚୌହାଣ ବୀର ସୁରେନ୍ଦ୍ର ସାଏ" ପୁସ୍ତକର ୧୫୮ ପୃଷ୍ଠାରୁ ୧୭୨ ପୃଷ୍ଠା ମଧ୍ୟରେ ଏହି ବତିଶଜଣ ସ୍ୱାଧୀନତା ସଂଗ୍ରାମୀଙ୍କ ସଂପର୍କରେ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ଅତଏବ ବହି ଖଣ୍ଡିକ ପାଠକଲେ ଜଣାଯାଏ ଯେ, ସେ କାଳର ଚିତ୍ରଗୁଡ଼ିକ ଅତି ସଂଯତ ଭାବରେ ଦେଇଛନ୍ତି । କୌଣସି ବିଷୟ ପ୍ରସଙ୍ଗକୁ ଅଯଥା ଏପଟ ସେପଟ କରିନାହାନ୍ତି । ମୋଟ ଉପରେ ବହିଖଣ୍ଡିକ ଅତ୍ୟନ୍ତ ସୁଖପାଠ୍ୟ ଓ ସଂଗ୍ରହଣୀୟ ଅଟେ ।



## ଚତୁର୍ଥ ଅଧ୍ୟାୟ

# ସାରସ୍ୱତ ସ୍ରଷ୍ଟା ସ୍ୱପ୍ନେଶ୍ୱରଙ୍କ ସୃଷ୍ଟି ପ୍ରତ୍ୟୟ

ସ୍ୱପ୍ନେଶ୍ୱର ଦାଶ ମୁଖ୍ୟତଃ ଜଣେ କବି ଓ ପଣ୍ଡିତ । କିନ୍ତୁ ଓଡ଼ିଆ ସାହିତ୍ୟକୁ ତାଙ୍କର ଇତିହାସ ରଚନା ଏକ ସ୍ୱତନ୍ତ୍ର ଦାନ ବୋଲି କୁହାଯିବ । ଓଡ଼ିଆ ସାହିତ୍ୟ ସମାଲୋଚନାରେ ଅବଶ୍ୟ ସେ ବିଶେଷ ଧ୍ୟାନ ଦେଇପାରି ନାହାନ୍ତି, କିନ୍ତୁ ଗଦ୍ୟ ରଚନାରେ ସେ ନିଜକୁ ସଂପୂର୍ଣ୍ଣ ରୂପେ ନିୟୋଜିତ କରିବାକୁ ଚେଷ୍ଟା କରିଛନ୍ତି । ଅଧିକନ୍ତୁ ସାହିତ୍ୟ ଓ ଇତିହାସ ସେ ଯେଉଁଳି ବ୍ୟାପକ ଭାବେ ଅଧ୍ୟୟନ, ଚିନ୍ତନ, ମନନ ଓ ଅନୁଶୀଳନ କରିଛନ୍ତି, ତାଙ୍କ ଗଦ୍ୟ ରଚନାବଳୀରୁ ସ୍ପଷ୍ଟ ଜଣାପଡ଼େ । ଏହି ଗଦ୍ୟରଚନା ଗୁଡ଼ିକରେ ତାଙ୍କର ଗଭୀର ଜୀବନ ଜିଜ୍ଞାସା, ଆତ୍ମ ଅନ୍ୱେଷା, ଜୀବନ ଓ ପ୍ରତିଭା ପ୍ରତି ଉଚ୍ଚ ମନ୍ତବ୍ୟ ସବୁ ଯଥାର୍ଥ ଭାବେ ସଂଗୋପିତ । ସେ ଜଣେ ସଫଳ ଐତିହାସିକ ଓ ସଂପାଦକ ମଧ୍ୟ ।

### ସଂପାଦକ ସ୍ୱପ୍ନେଶ୍ୱର

ସ୍ୱପ୍ନେଶ୍ୱର ଦାଶ ସାମ୍ବାଦିକ ଭାବରେ ନିଜର ପରିଚୟ ଦେଇଯାଇଛନ୍ତି । ସେଥିପାଇଁ ଗଡ଼ଜାତ ଅଞ୍ଚଳ ଭ୍ରମଣ କରିବା ତାଙ୍କର ଏକପ୍ରକାର ସଉକ ଥିଲା ବୋଲି କହିଲେ କିଛି ଭୁଲ୍ ହେବ ନାହିଁ । ସାହିତ୍ୟ ସହିତ ସାମ୍ବାଦିକତା ଏବଂ ସାମ୍ବାଦିକତା ସହିତ ଜଣେ ସଂପାଦକ ଭାବରେ ତାଙ୍କର ସାମାନ୍ୟ ଯୋଗଦାନ ରହିଛି । ସେ ଦୀର୍ଘକାଳ ପତ୍ରିକା ସଂପାଦନା କରି ନଥିଲେ ବି' ଅଳ୍ପ ସମୟ ପାଇଁ ଯାହା କରିଛନ୍ତି, ତାହା ଚିରକାଳ ସ୍ମରଣୀୟ । ଶ୍ରୀ ବ୍ରଜବନ୍ଧୁ ମିଶ୍ରଙ୍କ ସଂପାଦନାରେ ସମ୍ବଲପୁରରୁ ତା ୯.୧୦.୧୯୧୩ ମସିହାରେ "ଉତ୍କଳ ସେବକ" ନାମରେ ଖଣ୍ଡିଏ ପତ୍ରିକା ପ୍ରକାଶିତ ହୋଇଥିଲା । ଏହି ପତ୍ରିକା ବ୍ରଜବନ୍ଧୁ ମିଶ୍ର କିଛିଦିନ ସଂପାଦନା କରିବା ପରେ ପରେ ସ୍ୱପ୍ନେଶ୍ୱର ଦାଶ ଏହାର ସଂପାଦକତ୍ୱ ଗ୍ରହଣ କରିଥିଲେ । ସେହି ସମୟରେ ତାଙ୍କୁ ଶ୍ରୀ ନିତ୍ୟାନନ୍ଦ ବହିଦାର ଓ ଶ୍ରୀ ବିଶ୍ୱକେତନ ବହିଦାର ସାହାର୍ଯ୍ୟ କରିଥିଲେ ।

ପଶ୍ଚିମ ଓଡ଼ିଶାରେ ଗୋଟିଏ ଶୁଦ୍ଧ ସାହିତ୍ୟିକ ବାତାବରଣ ସୃଷ୍ଟି କରିବା ପାଇଁ ସେ ପ୍ରଥମେ ନିଜ ଉଦ୍ୟମ ଏବଂ ଶୁଭଚିନ୍ତାଟିଏ କରିଛନ୍ତି । ଏହି ଶୁଭଚିନ୍ତାର

ଅମୃତମୟ ଫଳ ହେଉଛି "ହୀରାଖଣ୍ଡ" ପତ୍ରିକା । ୧୯୧୯ ମସିହାରେ ସ୍ୱପ୍ନେଶ୍ୱର "ହୀରାଖଣ୍ଡ" ନାମରେ ଏକ ପତ୍ରିକା ପ୍ରକାଶ କରିଥିଲେ । "ହୀରାଖଣ୍ଡ" ପତ୍ରିକା ପ୍ରକାଶ ହେବା ସମୟରେ କବି ଗଙ୍ଗାଧର ମେହେର, ଶ୍ରୀ ପରମେଶ୍ୱରଙ୍କଠାରେ "ହୀରାଖଣ୍ଡ" ପତ୍ରିକାର ଶୁଭକାମନା ଜଣାଇଛନ୍ତି ଓ "ହୀରାଖଣ୍ଡର ଜନ୍ମ" ଶୀର୍ଷକ ଗୋଟିଏ କବିତା ଲେଖିଛନ୍ତି । ଗଙ୍ଗାଧରଙ୍କ ସେହି କବିତାଟି "ହୀରାଖଣ୍ଡ" ପତ୍ରିକାର ୧୯୧୯ ମସିହା, ଜୁନ୍ ସଂଖ୍ୟାରେ ପ୍ରକାଶିତ ହୋଇଛି । ସେତେବେଳେ କବି ମେହେର ଲେଖିଥିଲେ :

(୧)

"ଶୁଭ ଆଜ୍ଞା ହେଉ ମଙ୍ଗଳମୟ,
ଅବନୀରେ ହେଉ ମଙ୍ଗଳୋଦୟ
ତବ କୃପାକରେ ତିମିର ପରାଏ
ଦୂର ହୋଇଯାଉ ଦୂରିତଚୟ ।

(୨)

ଲାଜେ ପଡ଼ିଲୁଣି ନପାଇ ବାସ,
ଅନ୍ନବିନା ପ୍ରାଣ ହେଉଛି ନାଶ,
ହଟହଟା ସହି କଲବଲ ହୋଇ
ରହିଅଛୁଁ କରି ଶ୍ରୀପଦେ ଆଶ ।

(୩)

ହେଲାଣି ଅବନୀ ଅତି ବିକଳ,
ସହିବାକୁ ଆଉ ନାହିଁକି ବଳ,
ଏଥିରୁ ଅଧିକ ହେଲେ ମହାବାହୁ,
କୃପାମୟ ନାମ ହେବ ବିଫଳ ।

(୪)

ଦିଶିଲାଣି ତୁମ୍ଭ କୃପା ଲକ୍ଷଣ,
ନିବୃତ୍ତ ହେଲେଣି ଦୁର୍ବୃତ୍ତଗଣ,
ଦାନବ–ଗରବ ହେଲାଣି ଖରବ
ଉଠିଲାଣି ନଭେ ଶାନ୍ତି–କେତନ

(୫)

ତପତ ଜୀବନେ ଦେବାକୁ ଜଳ ·
ଉଠିଲେଣି ନଭେ ଘନପଟଳ,

ତୁମ୍ଭ କୃପା ଘେନି ବରଷି ଅବନୀ
ଅପଘନ କରୁଅଛି ଶୀତଳ ।

(୬)

ନିର୍ବାଣ ହେଲାଣି ଦାବ ଦହନ,
ଶାନ୍ତି ଲଭିଲେଣି ଗିରି ଗହନ,
କଦମ୍ୱ କେତକୀ କୁଟଜ ଯୂଥିକା
କଲେଣି କୁସୁମ–ଶିରୀ ବହନ ।

(୭)

ତୁମ୍ଭ କୃପା ଲଭି ତୁମ୍ଭ ଆଦେଶେ,
'ହୀରାଖଣ୍ଡ' ହୀରାଖଣ୍ଡ ପ୍ରଦେଶେ,
ଲଭିଛି ଜନମ ତୁମ୍ଭର ଧରମ
ପ୍ରଚାରିବା ପାଇଁ ନବୀନ ବେଶେ ।

(୮)

ତୁମ୍ଭର ମହିମା କରି ସ୍ମରଣ,
ଉତ୍କଳ–ମଣ୍ଡଳ ମାନବଗଣ,
ରଥଯାତ୍ରା ସହ ତା' ଜନ୍ମ ଉତ୍ସବେ
ମାତି କରୁଛନ୍ତି ମୁଦବର୍ଦ୍ଧନ ।

(୯)

ଶଙ୍ଖ ଘଣ୍ଟା ତାଳ ମୃଦଙ୍ଗ ନାଦ,
ବଣ୍ଟନ କରୁଛି ତବ ପ୍ରସାଦ,
ଟାଣୁଛନ୍ତି ଲୋକେ ରଥର ଦଉଡ଼ି
କରେ, ହୃଦେ ଧରି ତୁମ୍ଭର ପାଦ ।

(୧୦)

ଜୟ ଜଗଦୀଶ ଶିବ–ନିଧାନ,
ହୀରାଖଣ୍ଡ ତବ ଶିବ ବିଧାନ–
ବିତରଣେ ହେଉ ସମରଥ, କର
ତାକୁ ଜ୍ଞାନ ଆୟୁ ଶକତି ଦାନ ।''

ଉଦ୍ଧୃତ :– (ଗଙ୍ଗାଧର ଗ୍ରନ୍ଥାବଳୀ–୨୦୦୫; ନୂତନ ମୁଦ୍ରଣ
କବିତାମାଳା–୩୨୧–୨୨ ପୃ.
ଗ୍ରନ୍ଥମନ୍ଦିର, କଟକ–୨)

ସେହିପରି ୧୯୨୧ ମସିହାରେ 'ସାଧନା' ପତ୍ରିକା ପ୍ରକାଶ କରିଥିଲେ । କିନ୍ତୁ ସଂପାଦକ ସ୍ୱପ୍ନେଶ୍ୱରଙ୍କ ସଂପାଦିତ କୌଣସି ପତ୍ରିକା ଦୀର୍ଘକାଳ ତିଷ୍ଠିପାରି ନାହିଁ । ଫଳରେ ଅକାଳରେ ଶେଷ ଦୁଇ ପତ୍ରିକା 'ହୀରାଖଣ୍ଡ' ଓ 'ସାଧନା'ର ପରିସମାପ୍ତି ଘଟିଛି । ତାହା ସାହିତ୍ୟିକ, ରାଜନୈତିକ, ଆର୍ଥିକ ଅଥବା ଅନ୍ୟକୌଣସି କାରଣରୁ ହେଉ । ପରବର୍ତ୍ତୀ ସମୟରେ ସ୍ୱପ୍ନେଶ୍ୱର ପୂର୍ବକଥାକୁ ସ୍ମରଣ କରି ତାଙ୍କର ଆତ୍ମଚରିତରେ ଠାଏ ଉଲ୍ଲେଖ କରି ଲେଖିଛନ୍ତି :

*''ଦାନ୍ତ ବେଳକୁ ଚଣା ନାହିଁ-ଯେଉଁ ସମୟରେ ମୋର ବତିଶ ଦାନ୍ତ ସବଳ ଥିଲା, ସେହି ସମୟରେ ସମ୍ବଲପୁର ବିଶେଷତଃ ଭସ୍ମୀଭୂତ 'ହୀରାଖଣ୍ଡ ସାମ୍ରାଜ୍ୟ'ରୁ ଉପଯୁକ୍ତ ଲେଖକ ବାହାର କରିବା ଉଦ୍ଦେଶ୍ୟରେ ''ହୀରାଖଣ୍ଡ'' ନାମକ ମାସିକ ପତ୍ର ଖଣ୍ଡେ ବାହାର କରିଥିଲେ । ଦୁଇବର୍ଷ ଅତି କଷ୍ଟରେ ପତ୍ରଖଣ୍ଡିକ ଚଳାଇ ଦେଖିଲି ଯେ, ମୋର ଜିଲ୍ଲାରେ ଚଣା ନାହିଁ । ବର୍ତ୍ତମାନ ଚଣା ପ୍ରଚୁର ମିଳିଲାଣି, କିନ୍ତୁ ମୋର ଦାନ୍ତ କାହିଁ ?''*

ତା ୧୦-୫-୧୯୫୯

(ଉଦ୍ଧୃତ :- ଅପ୍ରକାଶିତ ଆତ୍ମଚରିତ ପାଣ୍ଡୁଲିପି)

ତାଙ୍କ 'ଆତ୍ମଚରିତ' ରେ ଓଡ଼ିଶା ଇତିହାସର ବହୁ ବିଷୟ ଉଲ୍ଲେଖ ଅଛି । ଭବିଷ୍ୟତରେ ଯଦି ତାହା ପ୍ରକାଶିତ ହୁଏ, ଏହା ହେବ ଓଡ଼ିଆ ସାହିତ୍ୟକୁ ଗୋଟିଏ ମୂଲ୍ୟବାନ ତଥା ମହାର୍ଘ୍ୟ ଦାନ । ବର୍ତ୍ତମାନ ସୁଦ୍ଧା ତାଙ୍କର ଯେଉଁ କେତୋଟି ରଚନାବଳୀ ଉପଲବ୍‌ଧ ସେଗୁଡ଼ିକର୍ ସଂକ୍ଷିପ୍ତ ଆଲୋଚନା ଏଠାରେ ସ୍ୱତନ୍ତ୍ର ଭାବରେ ଉପସ୍ଥାପିତ ।

### (୧) ସାହିତ୍ୟ ଦର୍ପଣ :

ସ୍ୱପ୍ନେଶ୍ୱରଙ୍କ ପ୍ରଥମ ଗଦ୍ୟ ରଚନା ହେଉଛି ''ସାହିତ୍ୟ ଦର୍ପଣ'' । ଏହା ତାଙ୍କର ଯୌବନାବସ୍ଥା ଅର୍ଥାତ୍ ୧୮୯୯-୧୯୦୦ ମସିହା ଆଡ଼କୁ ରଚିତ ହୋଇ ଏହାର ପାଣ୍ଡୁଲିପି ପ୍ରଥମେ କବିବର ରାଧାନାଥ ରାୟଙ୍କ ପାଖକୁ ପ୍ରେରିତ ହୋଇଥିଲା । ପାଣ୍ଡୁଲିପି ପାଠକରି ସେତେବେଳେ କବିବର ରାଧାନାଥ ଲେଖିଥିଲେ :

(ପତ୍ରାଂଶ)...

ମହାଶୟ,

ଆପଣଙ୍କ ପାଣ୍ଡୁଲିପି 'ସାହିତ୍ୟ ଦର୍ପଣ' ଆମୂଳଚୂଳ ପଢ଼ିଲି । ଏହା ପଢ଼ିବା ଦ୍ୱାରା ସମ୍ବଲପୁର ଅଞ୍ଚଳର ଜନଜାତିଙ୍କ ପରିଚୟ ମିଳିଲା । ବ୍ୟାକରଣଗତ ତ୍ରୁଟି ନାହିଁ ।

ଆପଣଙ୍କୁ ଧନ୍ୟବାଦ
ରାଧାନାଥ ରାୟ

ପ୍ରାବନ୍ଧିକ ସ୍ୱପ୍ନେଶ୍ୱରଙ୍କ ଜୀବଦ୍ଦଶାରେ ଏହି ମୂଲ୍ୟବାନ "ସାହିତ୍ୟ ଦର୍ପଣ" ପୁସ୍ତକଟି ପ୍ରକାଶିତ ହୋଇପାରି ନଥିଲେ ବି' ବର୍ତ୍ତମାନ ସୁଦ୍ଧା ପ୍ରକାଶିତ ହୋଇପାରି ନାହିଁ । କବିବର ରାଧାନାଥ କବି ସ୍ୱପ୍ନେଶ୍ୱରଙ୍କୁ ଯେଉଁ ପତ୍ରଟି ଦେଇଥିଲେ, ସେଇ ଚିଠିଖଣ୍ଡିକ ମଧ୍ୟ କୀଟଦ୍ରଂଶ ଅବସ୍ଥାରେ ଥିଲା, ତାକୁ ବହୁକଷ୍ଟରେ ଏହି ବହିର ଲେଖକ ଦେଖିବାକୁ ପାଇଥିଲା । ସ୍ୱପ୍ନେଶ୍ୱରଙ୍କ "ସାହିତ୍ୟ ଦର୍ପଣ" ଗଦ୍ୟ ରଚନାଟି ପ୍ରକାଶିତ ହୋଇଥିଲେ ସମ୍ବଲପୁର ସର୍ବୋପରି ପଶ୍ଚିମ ଓଡ଼ିଶାର ବହୁ ଅନାଲୋଚିତ ବିଷୟ ଆଲୋଚିତ ହୋଇଥାନ୍ତା, ମାତ୍ର ବିଧିର ବିଧାନ ଅନ୍ୟପ୍ରକାରର ।

## (୨) କୋଷାଙ୍କୁର :

୧୯୦୭ ମସିହାରେ ଓଡ଼ିଶା ମିସନ୍ ପ୍ରେସ୍, କଟକରୁ ଏହି ଶିଶୁ ଅଭିଧାନ "କୋଷାଙ୍କୁର" ପ୍ରକାଶିତ ହୋଇଛି । ସେତେବେଳେ ଏହି କୋଷଗ୍ରନ୍ଥଟି ସମଗ୍ର ଉତ୍କଳରେ ବହୁ ଭାବରେ ଆଦୃତ ହୋଇଥିଲା । ବର୍ତ୍ତମାନତାହା ଆଉ ଉପଲବ୍ଧ ହେଉ ନଥିବାରୁ ସେ ସଂପର୍କରେ ଏଠାରେ ବିଶେଷ କିଛି ଆଲୋଚନା କରାଯାଉ ନାହିଁ । ଏହି କୋଷଗ୍ରନ୍ଥକୁ ବଙ୍ଗଳା ଗଭର୍ଣ୍ଣମେଣ୍ଟ ଲାଇବ୍ରେରୀ ପୁସ୍ତକରୂପେ ନିର୍ବାଚିତ କରିଥିଲେ । ବଂଗଳା ଗଭର୍ଣ୍ଣମେଣ୍ଟଙ୍କଠାରୁ ସ୍ୱପ୍ନେଶ୍ୱର ଦାଶଙ୍କ ପାଖକୁ ଇଂରାଜୀରେ ଲିଖିତ ଯେଉଁ ପତ୍ରଟି ଆସିଥିଲା, ସେଥିରେ ଉଲ୍ଲେଖ ଥିଲା :

No : 2449

From

THE DIRECTOR OF PUBLIC INSTRUCTION, BENGAL,

To,

Babu Swapneswar Das,
Head Pandit, Middle English School,
Rampella,
District- Sambalpur

Calcutta, the 18th February, 1909

Sir,

In continuation of this office No. 22459, dated the 10th December 1908, I have the honour to Inform you that your Book "Kosankura" has been approved as a library book under Bengal Government Notification No. 618, dated the 29th January 1909. The price of the book has...to be three annas.

I have the honour to be ,

Sir,
Your most obedient Servant,
Sd/-
Offg : Personal Assistant to
Director of Public Instruction, Bengal.

ସ୍ୱପ୍ନେଶ୍ୱରଙ୍କ ''କୋଷାଙ୍କୁର'' ଅଭିଧାନର ଏକ ବିଜ୍ଞାପନ ଦେବଗଡ଼ରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ । ସ୍ୱପ୍ନେଶ୍ୱର ବିଜ୍ଞାପନ ଦେଇ ଲେଖିଥିଲେ :

ବିଜ୍ଞାପନ

'କୋଷାଙ୍କୁର' ।

ଏହା ଅନେକ ଅଭିଧାନର ସାର ସଂଗ୍ରହ । ପୁରାତନ ଓ ନୂତନ ସାହିତ୍ୟ ଶିକ୍ଷାର୍ଥୀମାନଙ୍କର ପ୍ରୟୋଜନୀୟ । ଛାନ୍ଦ ରଚନା କିମ୍ବା ଛାନ୍ଦ ଅର୍ଥ କରିବା ପାଇଁ 'କୋଷାଙ୍କୁର' ବିଲକ୍ଷଣ ସାହାଯ୍ୟ କରିପାରେ । ଉତ୍କଳର ବିଶିଷ୍ଟ ବିଶିଷ୍ଟ ବ୍ୟକ୍ତି ଏବଂ କେତେକ ସମ୍ବାଦପତ୍ର ଉକ୍ତ ପୁସ୍ତକର ଉପାଦେୟତା ମୁକ୍ତକଣ୍ଠରେ ସ୍ୱୀକାର କରିଅଛନ୍ତି । ଏହା ମାନ୍ୟବର ବଙ୍ଗ ଗଭର୍ଣ୍ଣମେଣ୍ଟଙ୍କ କର୍ତ୍ତୃକ ଲାଇବ୍ରେରୀ ପୁସ୍ତକ ସ୍ୱରୂପେ ସ୍ୱଗୃହୀତ ହୋଇଅଛି । କାଗଜ ଓ ଛାପା ଉତ୍କୃଷ୍ଟତର । ମୂଲ୍ୟ ତିନିଅଣା ମାତ୍ର । ଭିଃ.ପିଃ.ରେ ଉପଯୁକ୍ତ କମିଶନ ସହ ପୁସ୍ତକ ପଠାଯାଏ । ପୁସ୍ତକ ନିମ୍ନ ଠିକଣାରେ ପ୍ରାପ୍ତବ୍ୟ ।

ଶ୍ରୀ ସ୍ୱପ୍ନେଶ୍ୱର ଦାଶ କବିଭୂଷଣ
ହେଡ୍‌ପଣ୍ଡିତ ମିଃ.ଇ.ସ୍କୁଲ, ବରଗଡ଼ ପୋଃ, ସମ୍ବଲପୁର
(ସମ୍ବଲପୁର ହିତୈଷିଣୀ : ୨୧/୧୪ : ତା ୨୨.୧. ୧୯୧୦, ଶନିବାର)

## (ଗ) ବୈଦ୍ୟ କଳ୍ପଦ୍ରୁମ :

'ବୈଦ୍ୟ କଳ୍ପଦ୍ରୁମ' ହେଉଛି ସ୍ୱପ୍ନେଶ୍ୱର ଦାଶଙ୍କ ଗୋଟିଏ ବିରାଟ ତଥା ମୂଲ୍ୟବାନ ଗ୍ରନ୍ଥ । ଏହା ତାଙ୍କର ଅକ୍ଳାନ୍ତ ପରିଶ୍ରମର ଫଳ । ଏହି ପୁସ୍ତକଟି ସ୍ୱପ୍ନେଶ୍ୱରଙ୍କ ଦ୍ୱାରା ଲିଖିତ ଓ ସଂକଳିତ ହୋଇ ଏହାର ପାଣ୍ଡୁଲିପି ଓଡ଼ିଶାର ବିଶିଷ୍ଟ ବିଦ୍ୱାନ୍‌ମାନଙ୍କ ପାଖକୁ ପ୍ରେରିତ ହୋଇଥିଲା । ଯେଉଁମାନଙ୍କ ପାଖକୁ ଏହା ପ୍ରେରିତ ହୋଇଥିଲା ସେମାନେ ହେଲେ ପ୍ରଫେସର ଡକ୍ଟର ପର୍ଶୁରାମ ମିଶ୍ର, କବିରାଜ ଶ୍ରୀ କାମାକ୍ଷୀ ପ୍ରସାଦ ଶର୍ମା ଏବଂ କବିରାଜ ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମା । ପାଣ୍ଡୁଲିପିଟିକୁ ସମସ୍ତେ ତନ୍ନ ତନ୍ନ ପାଠକରି ନିଜନିଜର ମନ୍ତବ୍ୟମାନ ପ୍ରଦାନ କରିଥିଲେ । ପ୍ରଫେସର ଡ. ପର୍ଶୁରାମ ମିଶ୍ର ଲେଖିଥିଲେ :

Kabibhusan Sri Swapneswar Das, who has devoted his entire life of the cause of Oriya Literature, has during the last 12 years, compiled a very valuable and voluminous Ayurvedic Manuscript in Oriya called "Vaidya-Kalpa-druma". Which is the only of its kind in Orissa and in the absence of which oriya vaidyas do not admisister Ayurvedic Medicines properly & correctly. I had an occasion togo through several pages of "Kosha khanda" (glossary of all Ayurvedic terms, medicines and Ingradients) and also of "Mana Paribhasa" (Discussions about the Ayurvedic system of Measurements & Weights) and got the Impression that the author has done Justice to the subjects. I cannot but admire Kabibhusan's untiring energy and patience and congratulate him for compiling these rare and valuable volumes, which, If published, will be of greatest service to the suffering population of Orissa who depend on Ayurvedic medicines. I belived the Government and generous public will Lend their helping hand in publishing these volumes.

Sd/
Parasuram Mishra
Professor of Botany
Ravenshaw College
Cuttack

The 21st Aug, 1945

ଏହାର ପ୍ରଥମଭାଗ (ମୂଳକାଣ୍ଡ) କେବଳ ପ୍ରକାଶିତ ହୋଇଛି । ସଂପୂର୍ଣ୍ଣ ଗ୍ରନ୍ଥଟି ଏ ପର୍ଯ୍ୟନ୍ତ ପ୍ରକାଶ ପାଇପାରି ନାହିଁ । 'ବୈଦ୍ୟକଳ୍ପଦ୍ରୁମ' ସଂପର୍କରେ 'ସମାଜ'ର ସଂପାଦକ ଶ୍ରୀ ରାଧାନାଥ ରଥ, କବି ସ୍ୱପ୍ନେଶ୍ୱର ଦାଶଙ୍କ ପୁତୁରା ଐତିହାସିକ ଶିବପ୍ରସାଦ ଦାଶଙ୍କୁ ଖଣ୍ଡିଏ ଚିଠିରେ ଲେଖିଥିଲେ :

ପ୍ରିୟ ଶିବପ୍ରସାଦ ବାବୁ,

*ଆପଣଙ୍କର ତା ୧୯.୮.୫୩ର ପତ୍ର ପାଇଛି । ଦୁଇବର୍ଷ ପୂର୍ବେ ଯେତେବେଳେ ବୌଦ ଯାଇଥିଲି, ସେତେବେଳେ ଶ୍ରୀଯୁକ୍ତ ସ୍ୱପ୍ନେଶ୍ୱର ଦାଶ ମହାଶୟଙ୍କ 'ବୈଦ୍ୟ କଳ୍ପଦ୍ରୁମ'ର ପାଣ୍ଡୁଲିପି ଦେଖିଥିଲି । ଏହା ଏକ ବିରାଟ ଗ୍ରନ୍ଥ । ସେ ବହୁ ଶ୍ରମ କରି ଏହା କରିଛନ୍ତି । ମୋର ଅନୁରୋଧ, ସେ ଖଣ୍ଡିଏ ଦରଖାସ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର ଭାଇସ୍ ଚାନ୍ସେଲର୍‌ଙ୍କଠାକୁ ପଠାଇବେ ଓ ଅନୁମାନିକ ଛାପାଖର୍ଚ୍ଚ ଜଣାଇବେ । ବିଶ୍ୱବିଦ୍ୟାଳୟ ହାତରେ ଏପରି କାର୍ଯ୍ୟ ପାଇଁ କିଛି ଟଙ୍କା ଦିଆ ଯାଇଅଛି ।*

ଇତି
ଆପଣଙ୍କର
ରାଧାନାଥ ରଥ

ଶ୍ରୀ ଶିବପ୍ରସାଦ ଦାଶ
ଶିକ୍ଷକ, ଜିଲ୍ଲାସ୍କୁଲ, ସମ୍ୱଲପୁର

ରାଧାନାଥ ରଥଙ୍କ ଉପଦେଶାନୁସାରେ ସ୍ୱପ୍ନେଶ୍ୱର ଦାଶ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତିଙ୍କ ନିକଟକୁ ପତ୍ର ଲେଖିଛନ୍ତି ଗ୍ରନ୍ଥ ପ୍ରକାଶନ ସଂପର୍କରେ । ମାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟର ପୁସ୍ତକ ପ୍ରକାଶନ ସଂସ୍ଥା ଦ୍ୱାରା ତାହା ଗୃହୀତ ହୋଇନାହିଁ । ଫଳରେ ବାଧ୍ୟ ହୋଇ ନିଜେ ପ୍ରକାଶ କରିଛନ୍ତି । ଏହାର ପ୍ରଥମ ସଂସ୍କରଣ ୧୯୫୦ ରୁ ୧୯୫୨ ମସିହା ଆଡ଼କୁ ପ୍ରକାଶିତ ହୋଇଥିବା ସମ୍ଭବ । ଯେହେତୁ ଏହାର ନୂତନ ସଂସ୍କରଣ ପ୍ରକାଶିତ ହୋଇଛି ୧୯୫୩ ମସିହାରେ । ଏହି ଗ୍ରନ୍ଥଟି ସେତେବେଳେ ପ୍ରକାଶିତ ହୋଇ ବହୁ ଲୋକପ୍ରିୟତା ଅର୍ଜନ କରିଥିଲା । ଓଡ଼ିଶାର ବିଶିଷ୍ଟ ଐତିହାସିକ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ଇତିହାସ ସଂପର୍କରେ କୌଣସି ପ୍ରଶ୍ନ ନେଇ ତା ୨୧.୧୨-୧୯୫୭ ମସିହାରେ ବଲାଙ୍ଗୀର ଆସିଥିଲେ । ଐତିହାସିକ ଆଚାର୍ଯ୍ୟଙ୍କ ସହିତ ସ୍ୱପ୍ନେଶ୍ୱରଙ୍କ ସାକ୍ଷାତ ହୋଇଥିଲା ଓ ସେହିଦିନ "ବୈଦ୍ୟକଳ୍ପଦ୍ରୁମ"ର ଖଣ୍ଡିଏ କପି ଶ୍ରଦ୍ଧା ଉପହାର ସ୍ୱରୂପ ଆଚାର୍ଯ୍ୟ ମହାଶୟଙ୍କୁ ଦେଇଥିଲେ ।

"ବୈଦ୍ୟ କଳ୍ପଦ୍ରୁମ" ପରି ଗ୍ରନ୍ଥର ଶୁଭକଳ୍ପନା କରିବା ସ୍ୱପ୍ନେଶ୍ୱରଙ୍କ ଅନ୍ୟଏକ ମୌଳିକତାର ପରିଚୟ ଦିଏ । ତାଙ୍କ ମତରେ ସମଗ୍ର ପୃଥିବୀବାସୀ ନିରୋଗ ରୁହନ୍ତୁ ଏବଂ ସମସ୍ତେ ସ୍ୱ ସ୍ୱ କର୍ମପଥରେ ଅଗ୍ରସର ହୁଅନ୍ତୁ । ଏ ଦିଗରେ ତାଙ୍କ ଦ୍ୱାରା ସଂକଳିତ "ବୈଦ୍ୟକଳ୍ପଦ୍ରୁମ" ଗ୍ରନ୍ଥଟି ଓଡ଼ିଶାର ଘରେ ଘରେ ପହଞ୍ଚି ଯଥେଷ୍ଟ ଆଦୃତ ହେଉ; ଏହାହିଁ ସେ କାମନା କରିଛନ୍ତି ।

## (୪) ପ୍ରବଚନ ତରଙ୍ଗ :

ସ୍ୱପ୍ନେଶ୍ୱର ଦାଶ ଓ ତାଙ୍କ ପତ୍ନୀ ପଦ୍ମାବତୀ ଦେବୀଙ୍କ ଦ୍ୱାରା ସଂଗୃହୀତ କେତେକ ଢଗଢମାଳୀକୁ ନେଇ ପ୍ରଥମେ "ପ୍ରବାଦ ସଂଗ୍ରହ" ନାମରେ ଖଣ୍ଡେ ପୁସ୍ତକ ପ୍ରକାଶ ପାଇଛି ସନ୍ ୧୯୧୨-୧୩ ଆଡ଼କୁ । ଏହାର କେତେକାଂଶ ତତ୍‌କାଳୀନ "ସମ୍ୱଲପୁର ହିତୈଷିଣୀ" ପତ୍ରିକାର କେତେକ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହି ପ୍ରବଚନ ଗୁଡ଼ିକର ଭାଷାନେଇ ସେତେବେଳର ବାମଣ୍ଡା-ଦେବଗଡ଼ ପ୍ରାଞ୍ଚସ୍କୁଲର ହେଡ୍‌ପଣ୍ଡିତ ଶ୍ରୀ ସୁଦର୍ଶନ ନ୍ୟାୟରତ୍ନ ଓ ସ୍ୱପ୍ନେଶ୍ୱର ଦାଶଙ୍କ ମଧ୍ୟରେ କେତେକ ସପ୍ତାହ ମସିଯୁଦ୍ଧ ଲାଗି ରହିଥିଲା । 'ପ୍ରବାଦ ସଂଗ୍ରହ' ରେ ଆଉ କିଛି ନୂତନ ପ୍ରବଚନ ସଂଯୋଜିତ

କରି ସ୍ୱପ୍ନେଶ୍ୱର ଏହାର ନାମ "ପ୍ରବଚନ ତରଙ୍ଗ" ରଖିଛନ୍ତି ଓ ଏହା ୧୯୫୭ ମସିହା, ଜାନୁୟାରୀ ମାସରେ ପ୍ରକାଶିତ ହୋଇଛି । ଏହି ପୁସ୍ତକର ପ୍ରକାଶକ ଥିଲେ ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର, କଟକ-୨ । ଏହି ଗ୍ରନ୍ଥଟିକୁ ସ୍ୱପ୍ନେଶ୍ୱର ପତ୍ନୀ ପଦ୍ମାବତୀ ଦେବୀଙ୍କୁ ଉତ୍ସର୍ଗ କରି ଲେଖିଥିଲେ :

**ଉତ୍ସର୍ଗ**

ମୋର ସହଧର୍ମିଣୀ ଓ ସହକର୍ମିଣୀ
ନାରୀ କବି ସ୍ୱର୍ଗତା ପଦ୍ମାବତୀ ଦେବୀଙ୍କର
ପରଲୋକଯାତ୍ରା ଦିନର ସ୍ମୃତି–ରକ୍ଷାକଳ୍ପେ ଉତ୍ସୃଷ୍ଟ ।

'ପ୍ରବାଦ' ଓ 'ପ୍ରବଚନ' ସଂଗ୍ରହ କରିବା ଓ ତାକୁ ପୁସ୍ତକ ରୂପରେ ପ୍ରକାଶ କରିବାର ଦୃଢ଼ ଇଚ୍ଛା ଥିଲା ସ୍ୱପ୍ନେଶ୍ୱରଙ୍କର ଛୋଟ ଦିନରୁ । ପ୍ରବାଦ ଓ ପ୍ରବଚନ ସଂଗ୍ରହ କରିବା ପାଇଁ ସେ କେଉଁଠୁ କିଭଳି ଭାବେ ପ୍ରେରଣା ପାଇଥିଲେ, ସେ ସଂପର୍କରେ ଉଲ୍ଲେଖ କରି ଲେଖିଛନ୍ତି :

*"ଦନାଇ ଦାଶଙ୍କ ପ୍ରବଚନ ମୋତେ ପ୍ରବଚନ ସଂଗ୍ରହ ଓ ରଚନା କରିବାରେ ପ୍ରେରଣା ଦେଇଥିଲା । ଉକ୍ତ ଦନାଇ ଦାଶ ବରପାଲି ଜମିଦାରୀ ଅନ୍ତର୍ଗତ ଲେଣ୍ଡା ଗ୍ରାମରେ ଆମ୍ଭ ବଂଶରେ ଜନ୍ମ ଗ୍ରହଣ କରିଥିଲେ । ରାମଲୀଳା ରଚକ ଈଶ୍ୱର ଦାଶ (ଆମ୍ଭ ବଂଶର ବନ୍ଧୁ)ଙ୍କ ଜନ୍ମମାଟି ମଧ୍ୟ ବରପାଲି । "ରଘୁନାଥ ବିଳାସ" ଓ "ବ୍ରଜବିହାର"କାବ୍ୟର କବି ସ୍ୱର୍ଗତ କୃଷ୍ଣକରଙ୍କ ଜନ୍ମଭୂମି ଏହି ବରପାଲି ଅନ୍ତର୍ଗତ ବାରପାଲି । ଏହି ବରପାଲି ହିଁ ଉତ୍କଳ ପ୍ରଥିତ କବିବର ସ୍ୱର୍ଗତ ଗଙ୍ଗାଧର ମେହେରଙ୍କ ଜନ୍ମଭୂମି । ମୁଁ ପ୍ରତ୍ୟକ୍ଷ ଭାବରେ ବରପାଲିର ସନ୍ତାନ ହୋଇ ନଥିଲେ ହେଁ, ବରପାଲି ମାଟିରେ ଜାତ, ବରପାଲି ଅନ୍ନ ଜଳରେ ପୁଷ୍ଟ ଲେଣ୍ଡିଆ ଦାଶ ଘରର ଅଧମ ସନ୍ତାନ । ମୋର ପିତାମହ ଓ ପ୍ରପିତାମହ ଉକ୍ତ ଲେଣ୍ଡାରେ ଜନ୍ମଲାଭ କରିଥିଲେ ଏବଂ ବୃଦ୍ଧ ପ୍ରପିତାମହ ଲେଣ୍ଡାରେ ହିଁ ପ୍ରତିପୋଷିତ ହୋଇଥିଲେ । ସୁତରାଂ, ପରୋକ୍ଷଭାବରେ ବରପାଲିର ମାଟି, ପାଣି, ବାୟୁ, ଆକାଶ ଓ ତେଜର କଣିକା ମୋ ସୂକ୍ଷ୍ମ ଶରୀରରେ ମିଶି ରହିଛି ।"*

(ପ୍ରବଚନ ତରଙ୍ଗ ୧୯୫୭, ଭୂମିକା–ପୃ.)

ଏହି 'ପ୍ରବଚନ ତରଙ୍ଗ' ଗ୍ରନ୍ଥରେ ସର୍ବମୋଟ ୩୦୫୫ ଟି ପ୍ରବଚନ ସ୍ଥାନ ପାଇଛି । ଏଥିରେ ବହୁ ଉପାଦେୟ ପ୍ରବଚନ ସ୍ଥାନ ପାଇଛି । ଯଥା– ଗୋଟିଏ ପ୍ରବଚନ ଅଛି 'ସହସ୍ର ଚନ୍ଦ୍ରବର୍ଶୀ' । ସ୍ୱପ୍ନେଶ୍ୱର ଏହାର ଅର୍ଥ କରିଛନ୍ତି :

> "ସହସ୍ରେ ଦ୍ୱିତୀୟାଚନ୍ଦ୍ର ଦେଖିବା ପାଇଁ ମନୁଷ୍ୟ ପକ୍ଷେ ୮୩ ବର୍ଷ ୩ ମାସ ଆବଶ୍ୟକ, କିନ୍ତୁ ସେହି ସମୟ ମଧ୍ୟରେ ୨୭ଟା ମଳମାସ (ବଢ଼ାମାସ) ପଡ଼େ; ଉକ୍ତ ମଳମାସରେ ୨୭ଟା ୨ୟା ଚନ୍ଦ୍ର ଉଦିତ ହୁଏ । ଏଣୁ ୮୩ ବର୍ଷରୁ ୩ ବର୍ଷ ବାଦ୍ ଦେଲେ, ୮୦ ବର୍ଷରେ ମନୁଷ୍ୟର ଏକ ସହସ୍ର ଚନ୍ଦ୍ର ଦର୍ଶନ ଯୋଗ ହୋଇଥାଏ । ମନୁଷ୍ୟ ୮୦ ବର୍ଷ ପାର କଲେ, ଆଉ ଯମପୁର ଦର୍ଶନ ଯୋଗ ହୋଇ ନଥାଏ ।" (ପ୍ରବଚନ ତରଙ୍ଗ, ପୃ. ୧୬୩)

ପ୍ରବାଦ ସଂଗ୍ରାହକ ସ୍ୱପ୍ନେଶ୍ୱର ଦାଶଙ୍କ ସଂପର୍କରେ ଲୋକରତ୍ନ କବି କୁଂଜବିହାରୀ ଦାଶ କହିଛନ୍ତି :

> *"ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପରେ ଢଗଢମାଳୀ ସଂଗ୍ରହ ଦିଗରେ ଏକନିଷ୍ଠ ପ୍ରଚେଷ୍ଟା । ପ୍ରାୟ ହୋଇନାହିଁ । ଯେଉଁ କେତେକ ସାହିତ୍ୟିକ ଏ ଦିଗରେ ପ୍ରୟାସ କରିଛନ୍ତି, ସେମାନଙ୍କ ମଧ୍ୟରେ "ପ୍ରବଚନ ତରଙ୍ଗ" (୧୯୫୭)ର ସଂକଳକ ସମ୍ବଲପୁରର ସ୍ୱପ୍ନେଶ୍ୱର କବିଭୂଷଣଙ୍କ ନାମ ଉଲ୍ଲେଖଯୋଗ୍ୟ ।"*
>
> (ଲୋକବାଣୀ ସଞ୍ଚୟନ–୧ମ ଖଣ୍ଡ ୧୯୭୩, ପୃ. ୧୪)

## (୫) ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ

କବି ସ୍ୱପ୍ନେଶ୍ୱର ଦାଶଙ୍କ ଜୀବନ ଓ ପ୍ରତିଭାକୁ ଗଭୀର ଭାବରେ ନିରୀକ୍ଷଣ କଲେ ଜଣାଯାଏ ଯେ, ସେ ପ୍ରାଚୀନ କବି ଓ କବିତା, ମହାପୁରୁଷ, ଦାର୍ଶନିକ, ଗବେଷକଙ୍କ ନୀତି ଓ ଆଦର୍ଶରେ ବହୁଭାବରେ ଅନୁପ୍ରାଣିତ ହୋଇଛନ୍ତି । ବିଶେଷ କରି ଓଡ଼ିଆ ଓ ସଂସ୍କୃତ ସାହିତ୍ୟ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ଭକ୍ତି ଥିବାର ଦୃଷ୍ଟାନ୍ତ ତାଙ୍କର ରଚନାବଳୀରୁ ସ୍ପଷ୍ଟ ଜଣାପଡ଼େ । ଜୀବନରେ ବିଭିନ୍ନ ଘାତ ପ୍ରତିଘାତ ମଧ୍ୟରେ ଗତି କରିଛନ୍ତି ଏବଂ ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟଙ୍କ ମହତ୍‌ବାଣୀ ଓ ପରାମର୍ଶରେ ଉଦ୍‌ବୁଦ୍ଧ ହୋଇଛନ୍ତି । ଆଦି ଶଙ୍କରାଚାର୍ଯ୍ୟଙ୍କ ଅମରକୃତି ସହିତ ସେ କିପରି ପରିଚିତ ହେଲେ, ସେ ବିଷୟରେ ଉଲ୍ଲେଖ କରି ଲେଖିଛନ୍ତି :

*'ଶଙ୍କରାଚାର୍ଯ୍ୟ-ଗ୍ରନ୍ଥାବଳୀ'ର ଅନୁବାଦର ଶ୍ୱଶୁରାଳୟରେ ଖଣ୍ଡିଏ ଗୁଣାଗୁଣି ତାଳପତ୍ର ପୋଥି ତିନିପୁରୁଷରୁ ସଞ୍ଚିତ ଥିଲା । ସେଥିରେ ଯେ ଭୁଜଙ୍ଗ ପ୍ରୟାତ୍ର ଛନ୍ଦରେ ଶିବସ୍ତୋତ୍ର ରହିଥିଲା, ସେଥିର କତିପୟ ଶ୍ଳୋକ ମୁଁ ମୁଖସ୍ଥ କରିଥିଲି ଏବଂ ନିତ୍ୟ ପୂଜା ସମୟରେ ତାହା ପାଠ କରୁଥିଲି । ମୋର ସ୍ତ୍ରୀ ମୋର ମାଧୁର୍ଯ୍ୟ ଓ ଗମ୍ଭୀର ଗାନରେ ବିମୁଗ୍ଧା ହୋଇ ଗୃହକର୍ମ ଭୁଲି ଯାଉଥିଲେ । x x x ସେହିଦିନରୁ ମୋର ସ୍ତ୍ରୀଙ୍କ ଅନ୍ତଃକରଣରେ ଗୋଟାଏ ପ୍ରବଳ ଆକାଂକ୍ଷା ସ୍ୱତଃ ଉଦ୍ରିକ୍ତ ହୋଇଉଠିଲା ଯେ ମୁଁ ଶଙ୍କରାଚାର୍ଯ୍ୟଙ୍କ ସମସ୍ତ ଗ୍ରନ୍ଥ ଥରେ ପଢ଼ି ତାଙ୍କୁ ଶୁଣାଇବି । ଭଗବାନଙ୍କ ଇଚ୍ଛାରେ କେତେକ ବର୍ଷ ପରେ ଖଣ୍ଡିଏ ବଙ୍ଗାକ୍ଷର ମୁଦ୍ରିତ ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ ମୋତେ ମିଳିଯାଇଥିଲା ।''*

(ଗ୍ରନ୍ଥାବଳୀ– ୧୯୬୩ : ପରିଶିଷ୍ଟ, ପୃ.୧)

ପରେ ତାଙ୍କ ରଚନାବଳୀ ସବୁ ସଂଗ୍ରହ କରି ଖୁବ୍ ମନଯୋଗ ସହକାରେ ପାଠ କରିଛନ୍ତି ଏବଂ ନିଜ ସ୍ତ୍ରୀଙ୍କୁ ମଧ୍ୟ ଶୁଣାଇଛନ୍ତି । ଶଙ୍କରାଚାର୍ଯ୍ୟଙ୍କ ଜୀବନୀ ଓ ସାହିତ୍ୟ ତାଙ୍କୁ ଖୁବ୍ ପ୍ରଭାବିତ କରିଛି । ସେଥିପାଇଁ ଜଗଦ୍‌ଗୁରୁଙ୍କ ବାଣୀକୁ ସମଗ୍ର ଉତ୍କଳରେ ଉତ୍କଳଭାଷାରେ ପ୍ରଚାର କରିବା ପାଇଁ ସମ୍ଭବତଃ କବି ସ୍ୱପ୍ନେଶ୍ୱର ହିଁ ସର୍ବପ୍ରଥମେ ଚିନ୍ତା କରିଛନ୍ତି । ସ୍ୱପ୍ନେଶ୍ୱର କହିଛନ୍ତି :

*''ଗଦ୍ୟାନୁବାଦ ଅପେକ୍ଷା ପଦ୍ୟାନୁବାଦର ପ୍ରଭାବ ବେଶୀ । ସର୍ବସାଧାରଣଙ୍କର ଚିତ୍ତାକର୍ଷକ ପକ୍ଷେ ପଦ୍ୟାନୁବାଦ ଯେପରି ସୁଗମପନ୍ଥା, ଗଦ୍ୟାନୁବାଦ ସେପରି ନୁହେ । ମୁଁ ମୋର ଓଡ଼ିଆ ଭଉଣୀ ଓ ଭାଇମାନଙ୍କ ହୃଦୟରେ ଧର୍ମଭାବ ବଢ଼ାଇବା ଏବଂ ବୈଦିକ ଧର୍ମର ପୁନରୁଦ୍ଧାରକ ମହାସନ୍ନ୍ୟାସୀ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ପ୍ରତି କୃତଜ୍ଞତା ପ୍ରଖ୍ୟାପନ କରାଇବା ଉଦ୍ଦେଶ୍ୟରେ ଏହି ଦୁଃପ୍ରୟାସ କରିଅଛି ।''*

(ଗ୍ରନ୍ଥାବଳୀ– ୧୯୬୩ : ପରିଶିଷ୍ଟ, ପୃ.୨)

ଶଙ୍କରାଚାର୍ଯ୍ୟଙ୍କ ସଂସ୍କୃତ କାବ୍ୟାବଳୀକୁ ଓଡ଼ିଆରେ ପଦ୍ୟାକାରରେ ଅନୁବାଦ କରିଛନ୍ତି ସମ୍ଭବତଃ ୧୯୧୧ ମସିହାରୁ । ଏହା ତାଙ୍କର ଆକ୍ଷରିକ ଅନୁବାଦ । ଏହାର କେତେକ କବିତା ତତ୍‌କାଳୀନ ''ସମ୍ବଲପୁର ହିତୈଷିଣୀ'' ପତ୍ରିକାରେ ପ୍ରକାଶିତ ହୋଇଥିଲା । ପରେ ସ୍ୱପ୍ନେଶ୍ୱରଙ୍କ ଅନୁଦିତ ''ଶିବ ପଞ୍ଚାକ୍ଷର ସ୍ତୋତ୍ର'' ଓ ''ଅନ୍ନପୂର୍ଣ୍ଣା ସ୍ତୋତ୍ର'' ଦୁଇଟିରଚନା ପୁସ୍ତକ ରୂପରେ ମୁଦ୍ରିତ ହୋଇ ସମ୍ବଲପୁର ଜିଲ୍ଲାର

ଜନସାଧାରଣଙ୍କୁ ବିତରଣ କରାଯାଇ ଶେଷ ହୋଇଯାଇଥିଲା । ୧୯୧୧ ମସିହାରୁ ଅନୁବାଦ କାର୍ଯ୍ୟ ଆରମ୍ଭ କରି ୧୯୫୦–୫୨ ମସିହା ଆଡ଼କୁ ସମାପ୍ତ କରିଛନ୍ତି । ଦୀର୍ଘଦିନ ପର୍ଯ୍ୟନ୍ତ ଅନୁଦିତ 'ଶଙ୍କରାଚାର୍ଯ୍ୟ' ଗ୍ରନ୍ଥାବଳୀ ର ପାଣ୍ଡୁଲିପି ପଡ଼ିରହିଛି । ପରେ 'ସମାଜ'ର ସଂପାଦକ ରାଧାନାଥ ରଥଙ୍କ ଉତ୍ସାହ ଓ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଖଣ୍ଡିଏ ଦରଖାସ୍ତ ସହିତ ଅନୁଦିତ "ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ" କୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ପ୍ରକାଶ କରିବା ନିମନ୍ତେ ପଠାଇଛନ୍ତି । ଏ ସଂପର୍କରେ ତାଙ୍କର ଅପ୍ରକାଶିତ ଆତ୍ମଚରିତର ପାଣ୍ଡୁଲିପିରେ ଠାଏ ଉଲ୍ଲେଖ ଅଛି :

*"ଉତ୍କଳ ବିଶ୍ୱବିଦ୍ୟାଳୟୁ ଚାରିଖଣ୍ଡ ପାଣ୍ଡୁଲିପି ଦେଇଥିଲି ୧୯୫୫ ମଇ ୧୦ତାରିଖରେ । ଖଣ୍ଡେ ଗୃହୀତ ହୋଇଅଛି । ତାହା ହେଉଛି 'ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ' ।"*

(ତା ୬.୧୧.୫୭. ଆତ୍ମଚରିତ–ପାଣ୍ଡୁଲିପି, ପୃ.୧୦୩୪)

ଉତ୍କଳ ବିଶ୍ୱବିଦ୍ୟାଳୟର ପୁସ୍ତକ ପ୍ରକାଶନ ସଂସ୍ଥାଦ୍ୱାରା ଗୃହୀତ ହୋଇ ୧୯୬୩ ମସିହାରେ "ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ" ର ପ୍ରଥମ ସଂସ୍କରଣ ପ୍ରକାଶିତ ହୋଇଛି । କିନ୍ତୁ "ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ"ର ମୁଦ୍ରିତ ରୂପ କବି ସ୍ୱପ୍ନେଶ୍ୱର ଦାଶ ଦେଖିପାରି ନାହାନ୍ତି । ଗ୍ରନ୍ଥାବଳୀର ମୁଦ୍ରଣ କାର୍ଯ୍ୟ ଚାଲିଥିବା ବେଳେ ୧୯୬୨ ମସିହା ଜୁନ୍ ମାସ ୩ ତାରିଖରେ ହଠାତ୍ ତାଙ୍କର ପରଲୋକ ହୋଇଯାଇଥିଲା । କବି ସ୍ୱପ୍ନେଶ୍ୱର ଦାଶଙ୍କ ମହାପ୍ରୟାଣରେ ଉତ୍କଳ ବିଶ୍ୱବିଦ୍ୟାଳୟ ପୁସ୍ତକ ପ୍ରକାଶନ ସଂସ୍ଥାର କର୍ତ୍ତୃପକ୍ଷ ଗଭୀର ମର୍ମାହତ ହୋଇ ଲେଖିଥିଲେ :

*"ଦୁଃଖର ବିଷୟ ଯେ ସ୍ୱର୍ଗତ ସ୍ୱପ୍ନେଶ୍ୱର ଦାଶ କବିଭୂଷଣ ଆଉ ଇହଜଗତରେ ନାହାନ୍ତି । ସେ ଗତବର୍ଷ ଜୁନ୍‌ମାସ ୩ ତାରିଖରେ କେତେକ ଘଣ୍ଟାମାତ୍ର ଅସୁସ୍ଥ ରହି ସ୍ୱର୍ଗାରୋହଣ କଲେ । ପୂର୍ବଦିନ ୨ ତାରିଖରେ ସେ ସୁସ୍ଥଥିବା ବିଷୟ ତାଙ୍କ ପୁତ୍ର ଶ୍ରୀ ଅନିରୁଦ୍ଧ ଦାଶ–ସେକ୍ରେଟାରୀ ରେଭିନ୍ୟୁ ବୋର୍ଡ଼ଙ୍କ ପାଖକୁ ଲେଖିଥିଲେ । ସେ "ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ" ର ଶୀଘ୍ର ମୁଦ୍ରଣ ପାଇଁ ଅତୀବ କାତର ହୋଇ ଏହି ମହାପ୍ରୟାଣ ଦିନ କଟକକୁ ତାଙ୍କ ପୁତ୍ରଙ୍କର ବାସଭବନକୁ ଆସିବାକୁ ପୂର୍ବରୁ ଲେଖିଥିଲେ । କିନ୍ତୁ ବିଧାତା ତାଙ୍କୁ "ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ" ର ପ୍ରକାଶନ ଦେଖିବାକୁ ସୁଯୋଗ ଦେଲାନାହିଁ । ତାଙ୍କର ପୁତ୍ର ସ୍ୱର୍ଗତ ପିତାଙ୍କର*

*ଦ୍ୱାଦଶାହ ଉପଲକ୍ଷ୍ୟରେ ଶୋକ ସପ୍ତକ ଗୀତରେ ଏହା ଲେଖିଥିଲେ-*

*"ଶଙ୍କରଙ୍କ ଗ୍ରନ୍ଥାବଳୀ" ମୁଦ୍ରଣର ଆତୁରରେ*
*ଇଛିଥିଲ ମୃତ୍ୟୁଦିନ ଆସିବାକୁ ମୋର ପୁରେ ।*
*ବିଧି ଏଣେ ହେଲା ବାମ ବାକି ରହିଗଲା କାମ*
*ବାକି ରହିଗଲା ତବ ବୈଦ୍ୟକଳ୍ପଦ୍ରୁମ ।"*
*ସୁବିଶାଳ ସୁମହାନ-ଯଥା କଳ୍ପଦ୍ରୁମ ।"* (ପୃ.୬)

ଏଠାରେ ସୂଚନାଯୋଗ୍ୟ ଯେ, ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ରଚିତ "ଗଙ୍ଗାଧର-ଗ୍ରନ୍ଥାବଳୀ" ପ୍ରଥମ ସଂସ୍କରଣ ଯେଉଁ ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା ସେହି ପ୍ରେସ୍‌ରେ ସ୍ୱପ୍ନେଶ୍ୱର ଦାଶଙ୍କ ଅନୁଦିତ "ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ" ମୁଦ୍ରିତ ହୋଇଥିଲା ଅର୍ଥାତ୍ କଟକର ମହମ୍ମଦ ଅବ୍ଦୁଲ ହାଦିଙ୍କ "ଲକ୍ଷ୍ମୀନାରାୟଣ ପ୍ରେସ୍"ରେ ମୁଦ୍ରିତ । ସେତେବେଳେ "ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ" ର ମୂଲ୍ୟ ଟ ୫.୦୦ (ପାଞ୍ଚଟଙ୍କା ମାତ୍ର) ଥିଲା ଏବଂ ପୃଷ୍ଠା ସଂଖ୍ୟା ୪୪୨ + ମୁଖବନ୍ଧ ୬ ପୃଷ୍ଠା + ସୂଚୀପତ୍ର ୨ ପୃଷ୍ଠା = ମୋଟ ପୃଷ୍ଠା ସଂଖ୍ୟା = ୪୫୦ ପୃଷ୍ଠା । ଏହି ଗ୍ରନ୍ଥାବଳୀ ଖଣ୍ଡିକ ସେତେବେଳେ ପ୍ରକାଶିତ ହୋଇ ଖୁବ୍ ଲୋକପ୍ରିୟ ହୋଇଥିଲା ଓ ବର୍ଷେ ଦୁଇବର୍ଷ ମଧ୍ୟରେ ସମସ୍ତ ଗ୍ରନ୍ଥାବଳୀ ବିକ୍ରୀ ହୋଇଯାଇଥିଲା । ସ୍ୱପ୍ନେଶ୍ୱର ଦାଶଙ୍କ ଅନୁଦିତ "ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ" ରେ ୫୭ଟି ରଚନା ସ୍ଥାନ ପାଇଛି । ସେଗୁଡ଼ିକ ହେଲା :

୧. ବିବେକ ଚୂଡ଼ାମଣିଃ
୨. ଧନ୍ୟାଷ୍ଟକମ୍
୩. ବିଜ୍ଞାନ-ନୌକା
୪.ମୋହ-ମୁଦ୍‌ଗରଃ
୫.ନିର୍ବାଣ ଦଶକମ୍
୬. ନିର୍ବାଣ ଷଟ୍‌କମ୍
୭. ବ୍ରହ୍ମନାମାବଳୀ ମାଳା
୮. ଆତ୍ମ-ପୂଜା ବା ପରାପୂଜା
୯.କୌପୀନ ପଞ୍ଚକମ୍
୧୦. ଆତ୍ମାନାତ୍ମ-ବିବେକଃ
୧୧.ପ୍ରଶ୍ନୋତ୍ତର ରତ୍ନମାଳିକା
୧୨. ଆତ୍ମବୋଧ

୧୩. ଯୋଗ ତାରାବଳୀ
୧୪. କେବଳୋଽହମ୍
୧୫. ଅପରୋକ୍ଷାନୁଭୂତି
୧୬. ସାଧନ ପଞ୍ଚକମ୍
୧୭. ସାରତତ୍ତ୍ୱୋପଦେଶଃ
୧୮. ଆର୍ତ୍ତତ୍ରାଣାଷ୍ଟାଦଶକମ୍
୧୯. ଆନନ୍ଦଲହରୀ
୨୦. ବାକ୍ୟବୃତ୍ତଃ
୨୧. ହରିତତ୍ତ୍ୱମୁକ୍ତାବଳୀ
୨୨. ତତ୍ତ୍ୱୋପଦେଶଃ
୨୩. ଗୁର୍ବଷ୍ଟକମ୍
୨୪. ଭଗବନ୍ମାନସ୍ ପୂଜା
୨୫. ଷଟ୍‌ପଦୀ-ସ୍ତୋତ୍ରମ୍
୨୬. ଦକ୍ଷିଣାମୂର୍ତ୍ତି ସ୍ତୋତ୍ରମ୍
୨୭. ଅଜ୍ଞାନବୋଧିନୀ
୨୮.ହସ୍ତାମଳକମ୍
୨୯. ଆନନ୍ଦଲହରୀ ସ୍ତୋତ୍ରମ୍
୩୦.ଆତ୍ମଷଟ୍‌କମ୍
୩୧.ଅନ୍ନପୂର୍ଣ୍ଣା ସ୍ତୋତ୍ରମ୍
୩୨.ତ୍ରିପୁର ସୁନ୍ଦରୀ ସ୍ତୋତ୍ରମ୍
୩୩. ଦେବ୍ୟପରାଧ କ୍ଷମାପଣ ସ୍ତୋତ୍ରମ୍
୩୪. ଚର୍ପଟ ପଞ୍ଜରିକା ସ୍ତୋତ୍ରମ୍
୩୫. ହରିନାମ-ମାଳା-ସ୍ତୋତ୍ରମ୍
୩୬. ଶିବାପରାଧ-କ୍ଷମାପଣ ସ୍ତୋତ୍ରମ୍
୩୭. ଶିବନାମାବଲ୍ୟଷ୍ଟକମ୍
୩୮. ବେଦସାର ଶିବ-ସ୍ତୋତ୍ରମ୍
୩୯. ଶିବ ପଞ୍ଚାକ୍ଷର ସ୍ତୋତ୍ରମ୍
୪୦. କାଳଭୈରବାଷ୍ଟକମ୍
୪୧. ଶିବଭୁଜଙ୍ଗ ପ୍ରୟାତ୍ ସ୍ତୋତ୍ରମ୍
୪୨. ପାଣ୍ଡୁରଙ୍ଗାଷ୍ଟକମ୍

୪୩. ନାରାୟଣ ସ୍ତୋତ୍ରମ୍
୪୪. ଅଚ୍ୟୁତାଷ୍ଟକମ୍
୪୫. ଦଶାବତାର ସ୍ତୋତ୍ରମ୍
୪୬. ସଙ୍କଟ ନାଶନ ଲକ୍ଷ୍ମୀନୃସିଂହ ସ୍ତୋତ୍ରମ୍
୪୭. କୃଷ୍ଣାଷ୍ଟକ ସ୍ତୋତ୍ରମ୍
୪୮. ଅଚ୍ୟୁତାଷ୍ଟକମ୍
୪୯. ଗଙ୍ଗା ସ୍ତୋତ୍ରମ୍
୫୦. ମଣିକର୍ଣ୍ଣିକାଷ୍ଟକ ସ୍ତୋତ୍ରମ୍
୫୧. କାଶୀପଞ୍ଚକ ସ୍ତୋତ୍ରମ୍
୫୨. ଯମୁନାଷ୍ଟକ ସ୍ତୋତ୍ରମ୍
୫୩. ନର୍ମ୍ମଦାଷ୍ଟକ ସ୍ତୋତ୍ରମ୍
୫୪. ଯମୁନାଷ୍ଟକ ସ୍ତୋତ୍ରମ୍
୫୫. ମଣିରତ୍ନମାଳା
୫୬. ଆତ୍ମଜ୍ଞାନ କଥନମ୍
୫୮. ଦ୍ୱାଦଶପଞ୍ଜରିକା ସ୍ତୋତ୍ରମ୍
ଏବଂ
ଶିବଭୁଜଙ୍ଗ ପ୍ରୟାତ୍ ସ୍ତୋତ୍ରମ୍ ।

ସ୍ୱପ୍ନେଶ୍ୱର ଦାଶଙ୍କ ଓଡ଼ିଆ ରଚନା କିପରି ସରଳ ଓ ମଧୁର ହୋଇଛି ପାଠକେ ଦେଖନ୍ତୁ :

*"ସର୍ବବେଦାନ୍ତ ସିଦ୍ଧାନ୍ତ ଗୋଚରଂ ତମଗୋଚରମ୍ ।*
*ଗୋବିନ୍ଦଂ ପରମାନନ୍ଦଂ ସଦ୍‌ଗୁରୁଂ ପ୍ରଣତୋଽସ୍ମ୍ୟହମ୍ ।୧।*
*ଜନ୍ତୁନାଂ ନରଜନ୍ମ ଦୁର୍ଲ୍ଲଭମତଃ ପୁଂସ୍ତ୍ୱ ତତୋବିପ୍ରତା*
*ତସ୍ମାଦ୍‌ବୈଦିକ ଧର୍ମ୍ମମାର୍ଗପରତା ବିଦବତ୍ତ୍ୱମସ୍ମାତ୍ ପରମ୍ ।*
*ଆତ୍ମାନାମ୍ ବିବେଚନଂ ସ୍ୱନୁଭବୋ ବ୍ରହ୍ମତ୍ମନା ସଂସ୍ଥିତି–*
*ର୍ମୁକ୍ତିର୍ନୋ ଶତଜନ୍ମ କୋଟି ସୁକୃତୈଃ ପୁଣ୍ୟୈର୍ବିନା ଲଭ୍ୟତେ । ୨ ।*
*ଦୁର୍ଲ୍ଲଭଂ ତ୍ରୟମେ ବୈତଦ୍ଦେ ବାନୁଗ୍ରହ ହେତୁକମ୍ ।*
*ମନୁଷ୍ୟତ୍ୱଂ ମୁମୁକ୍ଷୁତ୍ୱଂ ମହାପୁରୁଷ ସଂଶୟଃ । ୩ ।*
(ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ–ବିବେକ ଚୂଡ଼ାମଣିଃ ୧୯୬୩, ପୃ.୧)

ଓଡ଼ିଆ ପଦ୍ୟାନୁବାଦ –

ସର୍ବବେଦାନ୍ତ ସିଦ୍ଧାନ୍ତ ଗୋଚରେ ଯାଙ୍କର । କରି ନ ପାରନ୍ତି ଯାକୁ ଇନ୍ଦ୍ରିୟେ ଗୋଚର ।

ଗୋବିନ୍ଦ ପରମାନନ୍ଦ ସଦ୍‌ଗୁରୁ ପୟରେ । କରୁଛି ପ୍ରଣାମ ମୁହିଁ ଭକତି ଭାବରେ । ୧
ପ୍ରାଣୀଙ୍କ ମଧ୍ୟେ ଦୁର୍ଲ୍ଲଭ ମନୁଷ୍ୟ ଜନମ । ମନୁଷ୍ୟ ମଧ୍ୟେ ପୁରୁଷ ଜନମ ତେସନ ।
ପୁରୁଷ ମଧ୍ୟେ ଦୁର୍ଲ୍ଲଭ ଜନମ ବ୍ରାହ୍ମଣ । ବ୍ରାହ୍ମଣ ମଧ୍ୟେ ବୈଦିକ ଧର୍ମପରାୟଣ । ୨
ତାହାଙ୍କ ମଧ୍ୟେ ଦୁର୍ଲ୍ଲଭ ଧର୍ମ୍ମମର୍ମ୍ମ ଜ୍ଞାନ । ଆତ୍ମା ଅନାତ୍ମା ବିଚାର ତହୁଁ ଶ୍ରେଷ୍ଠଜାଣ ।
ତହୁଁ ଅଟଇ ଦୁର୍ଲ୍ଲଭ ଆତ୍ମା ଅନୁଭବ । ବ୍ରହ୍ମେ ଅବସ୍ଥିତି ମୁକ୍ତି ତହୁଁ ସୁଦୁର୍ଲ୍ଲଭ । ୩

(ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ-୧୯୬୩, ବିବେକ ଚୂଡ଼ାମଣି, ପୃ.୧)

ସଂସ୍କୃତ-

"ମୂଢ଼ଃ ! ଜହୀହି ଧନାଗମତୃଷ୍ଣାଂ, କୁରୁ ତନୁବୁଦ୍ଧେ ! ମନସି ବିତୃଷ୍ଣାମ୍ ।
ଯଲ୍ଲଭସେ ନିଜକର୍ମ୍ମୋ ପାତ୍ତଂ ବିତ୍ତଂ ତେନ ବିନୋଦୟ ଚିତ୍ତମ୍ । ୧ ।
କା ତବ କାନ୍ତା କସ୍ତେ ପୁତ୍ରଃ, ସଂସାରୋଦ୍ଧୟମତୀବ ବିଚିତ୍ରଃ ।
କସ୍ୟ ତ୍ୱଂ ବା କୁତ ଆୟାତସ୍ତତ୍ତ୍ୱଂ ଚିନ୍ତୟ ତଦିଦଂ ଭ୍ରାତଃ । ୨ ।
ମା କୁରୁ ଧନଜନଯୌବନ ଗର୍ବଂ ହରତି ନିମେଷାଦ୍ କାଳଃ ସର୍ବମ୍ ।
ମାୟାମୟମିଦମଖିଳଂହିତ୍ୱା, ବ୍ରହ୍ମପଦଂ ପ୍ରବିଶାଶୁ ବିଦିତ୍ୱା । ୩ ।
ନଳିନୀ-ଦଳଗତ ଜଳମତିତରଳଂ ତଦ୍‌ବଜ୍ଜୀବନମତିଶୟ-ଚପଳମ୍ ।
କ୍ଷଣମପି ସଜ୍ଜନସଙ୍ଗତିରେକା, ଭବତି ଭବାର୍ଣ୍ଣବତରଣେ ନୌକା । ୪ ।
ଯାବଜ୍ଜନନଂ ତାବନ୍ମରଣଂ ତାବଜ୍ଜନନୀଜଠରେ ଶୟନମ୍ ।
ଇତି ସଂସାରେ ସ୍ଫୁଟତର ଦୋଷଃ କଥମିହ ମାନବତବ ସନ୍ତୋଷଃ ।୫ ।"

(ମୋହ-ମୁଦ୍‌ଗରଃ, ପୃ.୧୦୭)

ଓଡ଼ିଆ ପଦ୍ୟାନୁବାଦ-

ରେ ମୂଢ଼ ! ଧନ ଅରଜନ- । ଆଶାକୁ କର ବରଜନ ।।
ହେ ଅଳ୍ପବୁଦ୍ଧିମନ୍ତ ନର । ମନରୁ ତୃଷ୍ଣା ପରିହର ।।
ପ୍ରାକ୍ତନ-କର୍ମ-ଲବ୍‌ଧ ବିତ୍ତେ । ବିନୋଦ ଉପୁଜାଅ ଚିତ୍ତେ । ୧
ହେ ଭାଇ ଏ ସଂସାର ଚିତ୍ର । ଅଟଇ ଅତ୍ୟନ୍ତ ବିଚିତ୍ର ।।
କେ ତୁମ୍ଭ ପତ୍ନୀ ? କେ କୁମର ? ତୁମେ ପୁଣି ଅଟ କାହାର ?
କାହୁଁ ଆସିଛ ଏଣେ ପୁଣି । ଥରେ ଚିନ୍ତ ହେ ଏହା ଜାଣି ।।
ଜାଣିବ ସଂସାର ଅସାର । ଇନ୍ଦ୍ରଜାଲ ମାୟା ପ୍ରକାର । ୨ ।
ଧନଜନ ଯୌବନ ଗର୍ବ । କ୍ଷଣକେ କାଳ ହରେ ସର୍ବ ।।
ଏଣୁ ହେ ଭାଇ ଏହାପାଇଁ । କେବେ ଗରବ କର ନାହିଁ ।
ମାୟାମୟ ସଂସାର ତେଜି । ପ୍ରବେଶ ବ୍ରହ୍ମପଦେ ହେଜି । ୩
କମଳ ପତ୍ରଗତ ଜଳ । ପ୍ରାୟ ଏ ଜୀବନ ଚଞ୍ଚଳ ।।

ସଜ୍ଜନ–ସଙ୍ଗତିଟି ଏକା । ଭବସିନ୍ଧୁ ତରଣେ ନୌକା । ୪ ।
ଜନମ ହେଲେଟି ମରଣ । ମୃତ୍ୟୁ ପରେ ପୁଣି ଜନମ ।।
ଜନମ ମରଣ ହେବାର । ଜୀବର ଘଟେ ବାରବାର ।।
ହେ ନର ଥାଉଁ ଏହି ଦୋଷ । ତେବେ କାହିଁ ତବ ସନ୍ତୋଷ ?୫ ।
(ପୃ.୧୦୭)

ସ୍ୱପ୍ନେଶ୍ୱରଙ୍କ ଆକ୍ଷରିକ ଉତ୍କଳାନୁବାଦ କିପରି ହୋଇଛି, ତାହା ସେ ନିଜେ ନକହି ଉତ୍କଳର ପାଠକ–ପାଠିକାମାନଙ୍କ ହାତରେ ଦୋଷଗୁଣର ବିଚାର ପାଇଁ ଛାଡ଼ି ଦେଇଛନ୍ତି । ସ୍ୱପ୍ନେଶ୍ୱର ଲେଖିଛନ୍ତି :

*"ପ୍ରାଚୀନ ଉତ୍କଳୀୟ ପଦ୍ୟାନୁବାଦକମାନେ ଅନୁବାଦ ରଚନାରେ ପ୍ରଧାନତଃ ଦୁଇଟି ପନ୍ଥାର ଆଶ୍ରୟ ନେଇଥିବା ଦେଖାଯାଏ । ୧ମ ମୂଳ ସଂସ୍କୃତ ଶ୍ଳୋକର ଭାବ ନେବା, ୨ୟ ଅବିକଳ ପ୍ରତିଶବ୍ଦ ରଖିବା । ପ୍ରଥମ ପ୍ରକାରର ଅନୁବାଦକମାନେ ଶ୍ଳୋକର ଭାବମାତ୍ର ନେଇ ନିଜନିଜ ରଚନାରେ ପରିବର୍ଦ୍ଧନ, ପରିବର୍ଜନ ଓ ପରିବର୍ତ୍ତନର–ଦୃଷ୍ଟାନ୍ତ ଦେଖାଇଛନ୍ତି । ଦ୍ୱିତୀୟ ପ୍ରକାରର ଅନୁବାଦକଗଣ ମୂଳ ଶ୍ଳୋକର ଭାବରକ୍ଷା ସଂଗେ ସଂଗେ ଶବ୍ଦାର୍ଥ ରକ୍ଷା କରିବା ସକାଶେ ପ୍ରୟାସ କରିଛନ୍ତି । ତେବେ ଶେଷୋକ୍ତ ପ୍ରଣାଳୀର ଅନୁବାଦ ଅତି କ୍ୱଚିତ୍ ଦେଖିବାକୁ ମିଳେ । ମୋର ଅନୁବାଦଟା କେଉଁ ଶ୍ରେଣୀରେ ସ୍ଥାନ ପାଇପାରେ, ତାହା ସହୃଦୟ ସମାଲୋଚକମାନେ ହିଁ ମୀମାଂସା କରିନେବେ ।"* (ପୃ. ୩)

"ସମ୍ବଲପୁର ହିତୈଷିଣୀ"ରେ ପ୍ରକାଶିତ "କୌପୀନ–ପଞ୍ଚକ" ର ଓଡ଼ିଆ ଅନୁବାଦ ଓ ଗ୍ରନ୍ଥାବଳୀରେ ପ୍ରକାଶିତ "କୌପୀନ–ପଞ୍ଚକ"ର ଓଡ଼ିଆ ଅନୁବାଦର ସ୍ଥାନେ ସ୍ଥାନେ ପାଠ ଓ ପାଠାନ୍ତର ମଧ୍ୟରେ ପ୍ରଭେଦ ରହିଛି । ଦେଖନ୍ତୁ :

ପତ୍ରିକାର ପାଠ :

(୧)

"ଯେ ବେଦବାକ୍ୟେ ସଦାରସେ,
ଭିକ୍ଷାନ୍ନେ ରହଇ ହରଷେ ।
ସର୍ବଦା ପ୍ରଫୁଲ୍ଲ ଅନ୍ତରେ,
ଜଗତେ ବିଚରଣ କରେ ।
ସେହି କୌପୀନ–ଧାରୀ ଜାଣ,

ନିଶ୍ଚୟ ଅଟେ ଭଗବାନ ।
(୨)
ବୃକ୍ଷମୂଳ ଯାର ଆଶ୍ରୟ
ଭକ୍ଷେ ବିରତ କର ଦ୍ୱୟ ।
ଯେ ସମ୍ପଦେ କଚ୍ଛା ସମାନ
ମନେ କରଇ ତୁଚ୍ଛ ଜ୍ଞାନ ।
ସେହି କୌପୀନ–ଧାରୀ ଜାଣ,
ବିଶେ।, ନିଶ୍ଚୟ ଭଗବାନ ।
(୩)
ଯେ ଆତ୍ମାନନ୍ଦେ ପରିତୁଷ୍ଟ
ଦିବା ରଜନୀ ବ୍ରହ୍ମନିଷ୍ଠ ।
ଯାହାର ଇନ୍ଦ୍ରିୟ ସମସ୍ତ,
ବିଷୟେ ନୁହନ୍ତି ଆସକ୍ତ ।
ସେହି କୌପୀନ–ଧାରୀ ଜାଣ,
ବ୍ରହ୍ମାଣ୍ଡେ ନିଶ୍ଚେ ଭଗବାନ ।
(୪)
ଯେ ଦେହ ମଧ୍ୟ ଅହଂକାର,
କରି ଦୃଢ଼ରେ ପରିହାର ।
ନିଜେ ନିଜକୁ ଅବଲୋକେ,
ଅନ୍ତ, ମଧ, ବାହ୍ୟ ନ ରଖେ ।
ସେହି କୌପୀନ–ଧାରୀ ଜାଣ,
ଅଟଇ ନିଶ୍ଚେ ଭଗବାନ ।
(୫)
ପବିତ୍ର ନାମ ବ୍ରହ୍ମଙ୍କର,
ଉଚ୍ଚାରଣେ ଯେହୁ ତତ୍ପର ।
ଅହଂ ବ୍ରହ୍ମ ଭାବନା ରତ,
ଅଟଇ ଯେ ପୁଣି ସତତ ।
ଭିକ୍ଷା ଦ୍ରବ୍ୟ କରି ଭୋଜନ,
ଆନନ୍ଦେ କରେ ବିଚରଣ ।
ସେହି କୌପୀନ–ଧାରୀ ଜାଣ,

ବ୍ରହ୍ମାଣ୍ଡ ମଧ୍ୟେ ଭଗବାନ ।
(ସମ୍ବଲପୁର ହିତୈଷିଣୀ–୨୫/୧୨ : ତା ୧୦.୧. ୧୯୧୪, ଶନିବାର)

ଗ୍ରନ୍ଥାବଳୀର ପାଠ :

ଯେ ବେଦ ବାକ୍ୟେ ସଦା ରସେ । ଭିକ୍ଷାନ୍ନେ ରହଇ ହରଷେ ।
ସର୍ବଦା ପ୍ରଫୁଲ୍ଲ ଅନ୍ତରେ । ଜଗତେ ବିଚରଣ କରେ ।।
ସେହି କୌପୀନ ଧାରୀ ଜାଣ । ନିଶ୍ଚୟ ଅଟେ ଭାଗ୍ୟବାନ । ୧
ବୃକ୍ଷମୂଳ ଯାର ଆଶ୍ରୟ । ଭକ୍ଷେ ବିରତ କର ଦ୍ୱୟ ।
ସର୍ବ ସମ୍ପଦେ କନ୍ଥା ସମ । ଯେହୁ କରଇ ତୁଚ୍ଛ ଜ୍ଞାନ ।।
ସେହି କୌପୀନବନ୍ତ ଜାଣ । ତେଣୁ ନିଶ୍ଚୟ ଭାଗ୍ୟବାନ । ୨
ଯେ ଆତ୍ମାନନ୍ଦେ ପରିତୁଷ୍ଟ । ଦିବା ରଜନୀ ବ୍ରହ୍ମ ନିଷ୍ଠ ।
ଯାହାର ଇନ୍ଦ୍ରିୟ ସମସ୍ତ । ବିଷୟେ ନୁହନ୍ତି ଆସକ୍ତ ।।
ସେହି କୌପୀନଧାରୀ ଜାଣ । ଅଟଇ ନିଶ୍ଚେ ଭାଗ୍ୟବାନ । ୩
ଯେ ଦେହ ମଧ୍ୟେ ଅହଙ୍କାର । ଦୃଢ଼ରେ କରିଣ ଅନ୍ତର ।।
ଆପେ ଆପଣାକୁ ନିରେଖେ । ଅନ୍ତ ମଧ୍ୟ ବାହ୍ୟ ନ ରଖେ ।।
ସେହି କୌପୀନଧାରୀ ଜାଣ । ଅଟଇ ନିଶ୍ଚେଁ ଭାଗ୍ୟବାନ । ୪
ପବିତ୍ର ନାମ ବ୍ରହ୍ମଙ୍କର । ଉଚ୍ଚାରଣେ ଯେ ତତପର ।।
"ଅହଂବ୍ରହ୍ମ" ଭାବନା–ରତ । ଅଟଇ ଯେ ପୁଣି ସତତ ।।
ଭିକ୍ଷାଦ୍ରବ୍ୟ କରି ଭୋଜନ । ଚୌଦିଗେ କରେ ବିଚରଣ ।।
ସେହି କୌପୀନଧାରୀ ଜାଣ । ନିଶ୍ଚୟ ଅଟେ ଭାଗ୍ୟବାନ । ୫

(ଗ୍ରନ୍ଥାବଳୀ–ପୃ. ୧୨୧)

ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ସମଗ୍ର ସାରସ୍ୱତ କୃତି ଉପରେ ଦୃଷ୍ଟିନିକ୍ଷେପ ପୂର୍ବକ କବି ସ୍ୱପ୍ନେଶ୍ୱର ଦାଶ କହିଛନ୍ତି :

*"ଗ୍ରନ୍ଥାବଳୀସ୍ଥ ଗ୍ରନ୍ଥଗୁଡ଼ିକ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମତଃ ବେଦାନ୍ତ ଚର୍ଚ୍ଚା, ଦ୍ୱିତୀୟତଃ ଦେବଦେବୀ ସ୍ତୋତ୍ର ଯେ ସବୁ ଗ୍ରନ୍ଥରେ ବେଦାନ୍ତ ଚର୍ଚ୍ଚା ରହିଛି, ତାହାର ଭାବ ଅତ୍ୟନ୍ତ ଦୁରଭିଗମ୍ୟ, ସେସବୁ ବେଦାନ୍ତତତ୍ତ୍ୱ ଗଦ୍ୟରେ ପ୍ରକାଶ କରିବା ମଧ୍ୟ କଷ୍ଟସାଧ୍ୟ ।"* (ପୃ.୨)

କବି ତାଙ୍କର ୮୬ ବର୍ଷର ଜୀବନ କାଳ ମଧ୍ୟରେ ରାଶି ରାଶି କାବ୍ୟକବିତା ରଚନା କରିଛନ୍ତି । ନିଜର ଜୀବନ ଓ ପ୍ରତିଭାକୁ ଓଡ଼ିଆ ସାହିତ୍ୟ ଇତିହାସରେ ପରିଚିତ

କରାଇବା ପାଇଁ ଏକନିଷ୍ଠ ଚିତ୍ତରେ କଠୋର ସାଧନା କରିଛନ୍ତି । "କ'ଣ କରିବି ?" ତାଙ୍କୁ ମଧ୍ୟ ଦାରିଦ୍ର୍ୟର ଏହି ପଞ୍ଚାକ୍ଷରୀ ମନ୍ତ୍ର ଜପ କରିବାକୁ ପଡ଼ିଛି । କିନ୍ତୁ ସେ ମନ୍ତ୍ରଦ୍ରଷ୍ଟା ଋଷି ପରି ସବୁକୁ ସମ୍ଭାଳି ନେଇଛନ୍ତି । ସାମାଜିକ ଜୀବନର ବିଭିନ୍ନ ଘାତପ୍ରତିଘାତ ମଧ୍ୟରେ ତାଙ୍କର ଲେଖନୀ ନୀରବ ହୋଇ ଯାଇ ନାହିଁ । ବରଂ ସଦା ଚଞ୍ଚଳ ଓ କର୍ମମୁଖର ହୋଇଉଠିଛି । ନିଜର କବି କୁଟୀରରେ ସର୍ବଦା ନୀରବ ଥାଇ ବହୁ ପ୍ରାଚୀନ ସାହିତ୍ୟ ଚର୍ଚ୍ଚା ଓ ଗ୍ରନ୍ଥଚର୍ଚ୍ଚା କରିଛନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସେ ବହୁ ଭାବରେ ପ୍ରଭାବିତ ହୋଇଛନ୍ତି । ନିଜେ ମଧ୍ୟ ଭଞ୍ଜ ଚାତୁରୀରେ କବିତା ଲେଖିଛନ୍ତି । ପାଠକପାଠିକାମାନେ ସ୍ୱପ୍ନେଶ୍ୱରଙ୍କ ଭଞ୍ଜରୀତିରେ ଲିଖିତ ଗୋଟିଏ କବିତା ଦେଖନ୍ତୁ :

ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ଉପହାର
"ଉ" ଆଦ୍ୟ, "ତିରେ" ପ୍ରାନ୍ତ ଅନୁପ୍ରାସ
(ରାଗ–ବଙ୍ଗଳାଶ୍ରୀ)

"ଉପଇନ୍ଦ୍ର ଭଞ୍ଜ    କବିକୁଳ–କଞ୍ଜ–
ରବି ତବ ଜୟନ୍ତୀରେ,
ଉପହାର କିସ    ଦେବି କବି–ଈଶ !
ଭାବି ନ ପାରେଁ ମତିରେ
ଉପମା–ରାହିତ୍ୟ    ତବ ଯେ ସାହିତ୍ୟ
ଦେବ ! ନିଖିଳ କ୍ଷିତିରେ,
ଉପଢ୍‌–ଉକନ    ଲୋଚନ–ଲୋକନ
ହେଉନାହିଁ ମୋ' ସ୍ମୃତିରେ ।।
ଉପଯୋଗ କରି    ହେବି ଯେଣେ ପାରି
ଲୋକହାସ୍ୟ–ଅଖ୍ୟାତିରେ ।
ଉପଯୁକ୍ତ ନାବ    ପାଉନାହିଁ ଠାବ
ଭାବ–ସ୍ରୋତସ୍ୱତୀ–ତୀରେ ।।
ଉତ୍କଳ ସାହିତ୍ୟେ    ଗଗନେ ଆଦିତ୍ୟ
ଉଇଁଥିଲେ ସୁକୃତିରେ ।
ଉଚ୍ଛେଦିଲ ଅମା–    ତମ ମହାତମା
କାବ୍ୟ–କବିତା–ଜ୍ୟୋତିରେ ।।

ଉଡ଼ିଆ ଭାଷାକୁ ଉଡ଼ାଇ ଦେବାକୁ
ଯେବେ ବଙ୍ଗ ରାଜୁତିରେ ।
ଉଠିଲା କନ୍ଦଳ ତବ କାବ୍ୟ ବଳ
ସାହା ହେଲା ସଂହତିରେ ।।
ଉଡିଲା ପତାକା ନୀଳାଚଳେ ଡକା
ପଡ଼ିଲା ଜୟ ଗୀତିରେ ।
ଉଛୁଳିଲା ସିନ୍ଧୁ ବାଲିବନ୍ଧ ଭାଙ୍ଗି
ଭସାଇ କୂଟନୀତିରେ ।।
ଉପବନୁଁ ତବ ସପୁଷ୍ପ–ପଲ୍ଲବ
ତୋଳିଆଣି ଭକତିରେ ।
ଉପହାର ଦେଲି କରି ଏହି ଅଳି–
"ଘେନା ହେଉ ସପ୍ରୀତିରେ ।।"

ଏହି କବିତାଟି ତା ୨୨.୫.୧୯୫୯ ମସିହା, କଟକରେ ଅନୁଷ୍ଠିତ "ଉପେନ୍ଦ୍ର ଭଞ୍ଜ ଜୟନ୍ତୀ" ସମାରୋହରେ ପଠିତ ଓ ବିତରିତ ହୋଇଥିଲା ।

ସ୍ୱପ୍ନେଶ୍ୱରଙ୍କ ଅପ୍ରକାଶିତ ରଚନାବଳୀ ମଧ୍ୟରେ ଅଛି :

(୧) ସମ୍ବଲପୁର ଇତିହାସ ଦର୍ପଣ–(୧୯୦୫)

(୨) ରାଜାରାମ ବା ଉତ୍ତର ରାମ ଚରିତ – ୧୭ ସର୍ଗ ବିଶିଷ୍ଟ ଦୀର୍ଘ କାବ୍ୟ ।

(୩) ବିଚିତ୍ର ଭାଗବତ–(୧୯୩୩)

(୪) ବାଲ୍ମୀକି ଚରିତ– (୧୯୪୦)

(୫) ପଞ୍ଚବଟୀ– (ଅନୁବାଦ)

(୬) ମୋର ଜୀବନୀ–(ଆତ୍ମ ଚରିତ)



# ପରିଶିଷ୍ଟ – ୧

# ପତ୍ରାବଳୀ

ସୂଚନା : (କବି ଭୂଷଣ ସ୍ୱପ୍ନେଶ୍ୱର ଦାଶ ପ୍ରାୟ ପ୍ରତିଦିନ ବିଭିନ୍ନ ବ୍ୟକ୍ତି, ଅନୁଷ୍ଠାନକୁ ସ୍ୱତନ୍ତ୍ର ଭାବେ ପତ୍ର ଲେଖୁଥିଲେ । ପତ୍ର ଲେଖିବା ସହିତ ପ୍ରତିପତ୍ର ମଧ କିଛି କିଛି ପାଉଥିଲେ । ସେହି ପତ୍ରମାନଙ୍କର ଯାବତୀୟ ବିଷୟରେ ଆଲୋଚିତ ହୋଇଛି । ସୋନପୁର ରାଜଦରବାର, ଖଡ଼ିଆଳ ରାଜଦରବାର ତଥା ବାମଣ୍ଡା ଦରବାର ସହିତ ତାଙ୍କର ସୁବିମଳ ପରିଚୟ ରହିଥିଲା । ସୋନପୁର ଦରବାର, ପାଟଣା ଦରବାର ଓ ଖଡ଼ିଆଳ ଦରବାରରୁ ତାଙ୍କ ନିକଟକୁ ଯେଉଁ ବ୍ୟକ୍ତିଗତ ପତ୍ର ଆସିଥିଲା ପ୍ରାୟ ସେ ସମସ୍ତ ପତ୍ର ନଷ୍ଟ ହୋଇଯାଇଛି । କେବଳ ବାମଣ୍ଡା ରାଜପରିବାରରୁ ତାଙ୍କ ପାଖକୁ ଆସିଥିବା କେତୋଟି ପତ୍ର ଉଦ୍ଧାର କରାଯାଇଥିବାରୁ ତାହା ଆଜି ଲୋକଲୋଚନକୁ ଆସିପାରିଛି । ତା' ସହିତ ସମ୍ବଲପୁର ଜିଲ୍ଲା ସ୍କୁଲର ଭୂତପୂର୍ବ ହେଡ଼ମାଷ୍ଟର ଶ୍ରୀଯୁକ୍ତ ମଧୁସୂଦନ ଦାଶ ଓ ବିଶିଷ୍ଟ ସାହିତ୍ୟିକ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଗୋଟିଏ ଲେଖାଏଁ ପତ୍ର ହସ୍ତଗତ ହୋଇଛି । କବିଭୂଷଣ ସ୍ୱପ୍ନେଶ୍ୱରଙ୍କ ଜୀବନୀ ଓ ସାହିତ୍ୟ ଆଲୋଚନା କଲାବେଳେ ପାଠକ/ ପାଠିକାମାନଙ୍କୁ ଏହି ପତ୍ରଗୁଡ଼ିକ ବିଶେଷ ସାହାଯ୍ୟ କରିବ ବୋଲି ଏଠାରେ ତାହା ସ୍ୱତନ୍ତ୍ର ଭାବରେ ଉପସ୍ଥାପିତ ।)

## ପତ୍ରାବଳୀ – ୧

ସମ୍ବଲପୁର ଜିଲ୍ଲାସ୍କୁଲର ଭୂତପୂର୍ବ ହେଡ଼ମାଷ୍ଟର ଶ୍ରୀଯୁକ୍ତ ମଧୁସୂଦନ ଦାଶଙ୍କ ପତ୍ର :

ପ୍ରିୟ ପଣ୍ଡିତ ମହାଶୟ,

*ଭକ୍ତଜନ ମାନଙ୍କ ମହାର୍ଘ୍ୟଧନ ଏବଂ ହିନ୍ଦୀ ସାହିତ୍ୟର ଅମୂଲ୍ୟରତ୍ନ ତୁଳସୀ ରାମାୟଣର ଆପଣଙ୍କର ଉତ୍କଳ ପଦ୍ୟାନୁବାଦ ପାଠକରି ମୁଁ ସାତିଶୟ ଆନନ୍ଦ ଉପଭୋଗ କରିଅଛିଁ । ଅନୁବାଦ ବୋଲି ଆଗରୁ ଜାଣି ନଥିଲେ, ତାହାକୁ ମୂଳଗ୍ରନ୍ଥ ବୋଲି ମୁଁ ନିଶ୍ଚୟ ମନେ କରିଥାନ୍ତି । ମୁଁ ତାହାକୁ ମୂଳଗ୍ରନ୍ଥ ସଂଗେ ଅନେକ ସ୍ଥଳରେ ମିଳାଇ ପାଠ କରିଅଛିଁ ଏବଂ କୌଣସି ସ୍ଥଳରେ ଆପଣଙ୍କର କୃତିତ୍ୱର ଭୂୟସୀ ପ୍ରଶଂସା ନ କରି ରହି ପାରିନାହିଁ । ମୋର ବିଶ୍ୱାସ ଅନୁବାଦଟି ସର୍ବାଙ୍ଗସୁନ୍ଦର ହୋଇଅଛି । ଏହା ପ୍ରକାଶିତ ହେଲେ, ଉତ୍କଳ-ସାହିତ୍ୟ-ଭଣ୍ଡାର ଏକ ଅମୂଲ୍ୟ-ରତ୍ନ*

*ଲାଭ କରିବ ଏବଂ କି ଭକ୍ତ, କି ସାହିତ୍ୟ–ରସିକ ସମସ୍ତେ ଆପଣଙ୍କର ଯଶୋଗାନ କରିବେ । ମୁଁ ଆଶା କରେ, ଆପଣ ଏହାକୁ ଶୀଘ୍ର ପ୍ରକାଶ କରିବା ଲାଗି ଯତ୍ନବାନ ହେବେ ।*

ଆପଣଙ୍କର

ଶ୍ରୀ ମଧୁସୂଦନ ଦାଶ

ତା ୧୨. ୪. ୨୧

## ପତ୍ରାବଳୀ–୨

ଶ୍ରୀଯୁକ୍ତ କବିଭୂଷଣ ମହାଶୟ,

*ପ୍ରଣାମ ପୂର୍ବକ ଲେଖିବାର କାରଣ ଏହି ଯେ ଏହିକ୍ଷଣି ଆପଣ ପଠାଇଥିବାର 'ସାଧନା' ପତ୍ରିକା ଦେଖିଲି । ତହିଁରେ ବାମଣ୍ଡା ସମ୍ବାଦରେ ଗୁଟିଏ ଭୁଲ୍ ଲେଖା ହଇଛି । ମେକ୍‌ଫାର୍‌ଶନ ସାହେବ ଦୁଇ ମାସର ଛୁଟିରେ ଯାଇ ନାହିଁ । ଚିରଦିନ ନିମନ୍ତେ ସେ ବିଦାୟ ହୋଇଯାଇ ଅଛନ୍ତି । ଏଣୁ ଆପଣ ଭ୍ରମ ସଂଶୋଧନ ପୂର୍ବକ ପ୍ରକୃତକଥା ଶୁଣି ଆପଣଙ୍କର ସାଧନା ପତ୍ରିକାରେ ଲେଖିଦେବା ହେଉନ୍ତୁ ।*

ଇତି

ଶ୍ରୀମତୀ ରାଣୀ କନକ ମଂଜରୀ ସାହେବା

ବାମଣ୍ଡା

ତା୧୮.୨.୩୫

## ପତ୍ରାବଳୀ –୩

Rajbati

1.11.36

ଶ୍ରୀ ସ୍ୱପ୍ନେଶ୍ୱର ଦାଶ କବିଭୂଷଣ,

*ଆପଣଙ୍କର ଚିଠି ପାଇଲି । ଡେରିରେ ଆପଣଙ୍କର ଠାକୁ ଉତ୍ତର ଦେବାରୁ ମୋର ତ୍ରୁଟି ମାର୍ଜନା କରିବେ । ଆପଣ ମୋଠାକୁ ଲେଖିବା ପୂର୍ବରୁ ମୁଁ ଠିକ୍ କରି ନେଇଥିଲି ଯେ ମୁଁ ଆପଣଙ୍କର ସହିତ ଦେଖା ହେବି । ସମୟ ଠିକ୍ କରି ନ ଥିବାରୁ ଆପଣଙ୍କ ନିକଟକୁ ଲେଖିପାରିଲି ନାହିଁ । ଆଜି ଦିନ ୧୦ ଘଣ୍ଟା ସମୟରେ ଆସିଲି, ଭଲ ହୁଅନ୍ତା । ବୋଧହୁଏ ସମୟଟା ଆପଣଙ୍କୁ ଠିକ୍ ହେଉ ନାହିଁ । ସମୟାନୁସାରେ ଆସନ୍ତୁ ।*

ଇତି

ମହାଶୟେଶୁ

ଶ୍ରୀ ପ୍ରତାପଗଙ୍ଗ ଦେବ

## ପତ୍ରାବଳୀ– ୪

ମହାଶୟ,

*ଲେଖିବାର କାରଣ ଏହି ଯେ ବହି ଛପାଇବା ନିମନ୍ତେ ୩୦୦ ଶତଟଙ୍କା ଓ ପଚାଶଟଙ୍କା ପଠାଇଲି । ଆପଣ ପାଇବା ନ ପାଇବାର ଲେଖି ସୁଖି କରାଇବେ । ରାଜାଙ୍କର ବିବାହକୁ ଆପଣ ଆସିବେ । ବହି ଦେଖିବାକୁ ସମୟ ମିଳିଲା ନାହିଁ ।*

ଶ୍ରୀମତୀ ରାଣୀ କନକ ମଂଜରୀ ଦେବୀ

ବାମଣ୍ଡା

## ପତ୍ରାବଳୀ – ୫

ପଣ୍ଡିତ ଶ୍ରୀଯୁକ୍ତ ସ୍ୱପ୍ନେଶ୍ୱର ଦାଶ କବିଭୂଷଣ

ମହାଶୟ ସମିପେଷୁ !

*ଆପଣଙ୍କର ଲେଖିତ ବାମଣ୍ଡାରେ ଦଶହରା ସିର୍ଷକ ପ୍ରବଂଧ ଦେଖି ବଡ଼ ସୁଖୀ ହେଲୁଁ । ସମ୍ବାଦ ପତ୍ରିକାକୁ ପଠାଇ ଦିଅନ୍ତୁ । ଏବାଦେ ଆପଣଙ୍କ ପୁତ୍ର ଶ୍ରୀ ଶ୍ରୀବତ୍ସ ଦାଶଙ୍କ 'ଦେବଗଡ଼ରେ କଳାପାହାଡ଼ ଅଭିନୟ' ପ୍ରବଂଧଟି ମଧ ଅତି ଚମତ୍କାର ହୋଇଛି । ଖବର କାଗଜରେ ବାହାରିଲେ ଦେଖିବା ପାଇଁ ପ୍ରତିଦିନ ଡାକ ଆସିବା ବେଳେ ରେଷ୍ଟିକାଗଜ ପାଇବା ପାଇଁ ଅପେକ୍ଷାରେ ଅଛୁ । ଆପଣଙ୍କର ପୁତ୍ର ବାମଣ୍ଡାର ଦର୍ଶନୀୟ ସ୍ଥାନମାନ କିଛି ଦେଖି ନାହାନ୍ତି । ମଟର ପଠାଇ ଦେବୁ । ସେ ସବୁ ଦେଖି ସାରିଲା ପରେ ଦିନା କେତେ ଯାଉ ଆପଣମାନେ କିବେ lx x x ନୋଚେତ୍ ଗୋବିନ୍ଦପୁରକୁ ମଟରରେ ପହଞ୍ଚାଇ ଦେବାର ବନ୍ଦୋବସ୍ତ କରିଦେବୁଁ । ଗୋଚରାର୍ଥେ ଲେଖିଲୁଁ ।*

ଶ୍ରୀମତୀ ରାଜ ଜେଜେମାତା

ତା ୨୭.୧୦.୧୯୩୭

ବାମଣ୍ଡାଷ୍ଟେଟ୍

## ପତ୍ରାବଳୀ – ୬

ଶ୍ରୀଯୁକ୍ତ ସ୍ୱପ୍ନେଶ୍ୱର ଦାଶ କବିଭୂଷଣ

ମହାଶୟ ସମିପେଷୁ,

*ଆପଣ ପଠାଇଥିବା ସଢ଼େଇକଳା ମହାରାଜଙ୍କ ପତ୍ର ଦୁଇଖଣ୍ଡ ଦେଖି ବଡ଼ ଖୁସି ହେଲୁଁ । ଆପଣଙ୍କ ସହଧର୍ମିଣୀଙ୍କ ରଚିତ 'କୃଷ୍ଣ କଥାମୃତ' ବହିର ମୁଦ୍ରଣ କରାଇ ଦେବାକୁ ପ୍ରତିଶ୍ରୁତ ହୋଇ ଅଛନ୍ତି । ସୁଖର କଥା ଉକ୍ତ ପୁସ୍ତକର ପାଣ୍ଡୁଲିପି ପାଠ କରିଅଛୁଁ । ଅତି ଉପାଦେୟ ହୋଇଛି x x x 'କୃଷ୍ଣ କଥାମୃତ' ନାମଟି ମଧ*

*ସାର୍ଥକ ହୁଇଛି । ଅଧିକ ଲେଖିବା ବାହୁଲ୍ୟ । x x x*

ଶ୍ରୀମତୀ ରାଜ ପିତାମହୀ

ବାମଣ୍ଡାଷ୍ଟେଟ୍

## ପତ୍ରାବଳୀ – ୭

ଓଡ଼ିଶା ସାହିତ୍ୟ ଏକାଡ଼େମୀ

ଭୁବନେଶ୍ୱର

୧୩. ୭. ୬୦

ମହାଭାଗ,

ପ୍ରଣାମ ଗ୍ରହଣ କରିବେ ।

*ଆପଣ କିପରି ଅଛନ୍ତି, ଲେଖିବେ । ମୋର ପୂର୍ବବତ୍ ସେହି ଶ୍ୱାସରୋଗ । ତଥାପି ଭଂଗାତୁଟା ଭାବରେ ଯାହା ପାରୁଛି କରୁଛି । ଆପଣ ଆଜିକାଲି କ'ଣ ଲେଖାଲେଖି କରୁଛନ୍ତି ।*

ଇତି ବଶମ୍ବଦ

ଲକ୍ଷ୍ମୀ ନାରାୟଣ ସାହୁ

## ପରିଶିଷ୍ଟ – ୨

### ସ୍ୱପ୍ନେଶ୍ୱରଙ୍କ ଏକ ଦୁଷ୍ପ୍ରାପ୍ୟ ମନ୍ତବ୍ୟ :

*ସୂଚନା – (ସମ୍ବଲପୁରର ଅନ୍ୟତମ ପଲ୍ଲୀକବି ଶ୍ରୀ ଅଭିମନ୍ୟୁ ପ୍ରଧାନଙ୍କ ରଚିତ ''କର୍ମସ୍ୱାମୀ ପୂଜା'' କବିତା ପୁସ୍ତକ ଉପରେ କବିଭୂଷଣ ସ୍ୱପ୍ନେଶ୍ୱରଙ୍କ ଗୋଟିଏ ଦୁଷ୍ପ୍ରାପ୍ୟ ମନ୍ତବ୍ୟ ଏଠାରେ ଉଦ୍ଧାର କରାଗଲା । କବି ତାଙ୍କ ମୃତ୍ୟୁ (ତା ୩.୬.୧୯୬୨) ର କିଛିମାସ ପୂର୍ବରୁ ଏହି ମନ୍ତବ୍ୟଟି ଲେଖିଥିଲେ । ଏଠାରେ ସୂଚନାଯୋଗ୍ୟ ଯେ, ଅଭିମନ୍ୟୁ ପ୍ରଧାନଙ୍କ ''କର୍ମସ୍ୱାମୀପୂଜା'' ପୁସ୍ତକଟି ୧୯୬୨ ମସିହାରେ ଶ୍ରୀ ଦୟାଲାଲ ଯୋଷୀଙ୍କ ''ଶାନ୍ତି ପ୍ରିଣ୍ଟିଂ ପ୍ରେସ୍'' ବରଗଡ଼ରେ ମୁଦ୍ରିତ ।)*

ମନ୍ତବ୍ୟ :

''କର୍ମସ୍ୱାମୀପୂଜା''ର ପାଣ୍ଡୁଲେଖ୍ୟ ଉପର୍ଯ୍ୟୁପରି ପଢ଼ି ମୁଁ ବାସ୍ତବିକ ବିମୁଗ୍ଧ ହୋଇଅଛି । ସମ୍ବଲପୁର ଜିଲ୍ଲାର କୋଣବଣ ଅଞ୍ଚଳରେ ଲେଖକ ସାହାଯ୍ୟ ସମ୍ବଳହୀନ ଅବସ୍ଥାରେ ପଡ଼ିରହି, କର୍ମପୂଜାରେ ରତ ହୋଇଥିବା ସମସ୍ୟା ଭାବିଲେ; କର୍ମର ପ୍ରଭାବ ମନେପଡ଼େ । ''କର୍ମା ଏକାଦଶୀ'' ଆଦିବାସୀ ବହୁଳ ସମ୍ବଲପୁର ଓ ତତ୍ସନ୍ନିହିତ ଅରଣ୍ୟ ଅଞ୍ଚଳର ଗୋଟିଏ ପ୍ରଧାନ ପର୍ବ । ଲେଖକ ଏହି ଅଞ୍ଚଳରେ ପ୍ରଚଳିତ ପର୍ବ ଓ ଗୀତର ସୌନ୍ଦର୍ଯ୍ୟ ଆଧୁନିକ ଶିକ୍ଷିତ ସମାଜର ଚକ୍ଷୁଗୋଚର କରିବା ଉଦ୍ଦେଶ୍ୟରେ ତାଙ୍କର ଲେଖନୀ ଚାଳନା କରି ବାଣୀପୂଜାର ଯେଉଁ ଆଦର୍ଶ ପ୍ରଦର୍ଶନ କରିଅଛନ୍ତି; ତାହା ପ୍ରଣିଧାନଯୋଗ୍ୟ । ରଚନାର ଭାଷା ସରଳ, ସହଜ–ସରସ ଓ ଶ୍ରୁତି ପ୍ରୀତିକର । ସେ ଲେଖାବର୍ଗ ନିଜର କବିଧର୍ମର ନିତ୍ୟକର୍ମ କଲେ, ଯଶସ୍ୱୀ ହୋଇପାରିବେ ।

ଇତି

ତା ୩୦.୩. ୬୨ ଇ :
ଚୈତ୍ର କୃଷ୍ଣନବମୀ
ଶୁକ୍ରବାର ।

ଶ୍ରୀ ସ୍ୱପ୍ନେଶ୍ୱର ଦାଶ
କବିଭୂଷଣ,
କବି କୁଟୀର,
ବରଗଡ଼, ସମ୍ବଲପୁର



# ପ୍ରାଥମିକ ଉପାଦାନ ପଞ୍ଜିକା :

ଦାଶ, ସ୍ୱପ୍ନେଶ୍ୱର(କବିଭୂଷଣ)

୧୯୨୩ : ସମ୍ବଲ ମନସା(ପ୍ରଥମ ସଂସ୍କରଣ)
ସାଧନା ପ୍ରେସ୍, ସମ୍ବଲପୁର,
ପ୍ରକାଶକ : ସୋନପୁର ଦରବାର ।

୧୯୨୪ : ତୁଳସୀ ରାମାୟଣ (ପ୍ରଥମ ସଂସ୍କରଣ)
କିଶୋର ଚନ୍ଦ୍ର ପ୍ରେସ୍, ଆସ୍କ (ଗଂଜାମ)
ପ୍ରକାଶକ : ଶ୍ରୀ ମଦନମୋହନ ସିଂହଦେବ ।
(ଧରାକୋଟ ରାଜା)

୧୯୨୪ : କୃତଜ୍ଞତା–ପୁଷ୍ପାଞ୍ଜଳି (ପ୍ରଥମ ସଂସ୍କରଣ)
ସାଧନା ପ୍ରେସ୍, ସମ୍ବଲପୁର,
ପ୍ରକାଶକ : ସୋନପୁର ଦରବାର ।

୧୯୩୭ : ଅନ୍ତ୍ୟେଷ୍ଟିଯାଗ (ପ୍ରଥମ ସଂସ୍କରଣ)
ସାଧନା ପ୍ରେସ୍, ବରଗଡ଼
ପ୍ରକାଶକ : ସୋନପୁର ଦରବାର

୧୯୫୧ : ଅନ୍ନପୂର୍ଣ୍ଣା–ସ୍ତୋତ୍ରମ୍ ଓ ଅଚ୍ୟୁତାଷ୍ଟକମ୍
ଗୋସ୍ୱାମୀ ପ୍ରେସ୍, କଟକ–୧
ପ୍ରକାଶକ : ସ୍ୱପ୍ନେଶ୍ୱର ଦାଶ କବିଭୂଷଣ

୧୯୫୩ : ବୈଦ୍ୟ କଳ୍ପଦ୍ରୁମ (ନୂତନ ସଂସ୍କରଣ)
ଗୋସ୍ୱାମୀ ପ୍ରେସ୍, କଟକ–୧
ପ୍ରକାଶକ : ସ୍ୱପ୍ନେଶ୍ୱର ଦାଶ, କବିଭୂଷଣ

୧୯୫୬ :କବିତା ଝଟିକା ( ପ୍ରଥମ ସଂସ୍କରଣ)
ଗୋସ୍ୱାମୀ ପ୍ରେସ୍, କଟକ – ୧
ପ୍ରକାଶକ : ସ୍ୱପ୍ନେଶ୍ୱର ଦାଶ, କବିଭୂଷଣ

୧୯୫୬ : କାମାୟନୀ (ପ୍ରଥମ ମୁଦ୍ରଣ)

ରାଷ୍ଟ୍ରଭାଷା ସମବାୟ ପ୍ରେସ୍, କଟକ
ପ୍ରକାଶକ : ସ୍ୱପ୍ନେଶ୍ୱର ଦାଶ, କବିଭୂଷଣ

୧୯୫୭ : ପ୍ରବଚନ ତରଙ୍ଗ (ପ୍ରଥମ ସଂସ୍କରଣ)
ରାଷ୍ଟ୍ରଭାଷା ସମବାୟ ପ୍ରେସ୍, କଟକ-୧
ପ୍ରକାଶକ : ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର, କଟକ-୨

୧୯୫୭ : କର୍ମବୀର ବାଲ୍‌କି ଦାଶ(ପ୍ରଥମ ସଂସ୍କରଣ)
ନବଜୀବନ ପ୍ରେସ୍, କଟକ-୨
ପ୍ରକାଶକ : ବିଜୟ କେତନ ଦାଶ

୧୯୫୮ : ଚୌହାଣବୀର ସୁରେନ୍ଦ୍ର ସାଏ(ପ୍ରଥମ ସଂସ୍କରଣ)
ନବଜୀବନ ପ୍ରେସ୍,କଟକ-୨,
ପ୍ରକାଶକ : ଶ୍ରୀଯୁକ୍ତ ଅନୁପ ସିଂହଦେବ
(ରାଜା ସାହେବ ଖଡ଼ିଆଳ)

୧୯୫୮ : ଗାନ୍ଧୀ ବୋଲି (ପ୍ରଥମ ସଂସ୍କରଣ)
ନବଜୀବନ ପ୍ରେସ୍, କଟକ-୨,
ପ୍ରକାଶକ : ସ୍ୱପ୍ନେଶ୍ୱର ଦାଶ, କବିଭୂଷଣ

୧୯୫୯ : କବିତା ପେଟିକା(ପ୍ରଥମ ସଂସ୍କରଣ)
ନବଜୀବନ ପ୍ରେସ୍, କଟକ-୨
ପ୍ରକାଶକ : ସ୍ୱପ୍ନେଶ୍ୱର ଦାଶ, କବିଭୂଷଣ

୧୯୫୯ : ଆଁସୂ ବା ଅଶ୍ରୁ (ପ୍ରଥମ ସଂସ୍କରଣ)
ନବଜୀବନ ପ୍ରେସ୍, କଟକ-୨,
ପ୍ରକାଶକ : ଶ୍ରୀ ବିଜୟ କେତନ ଦାଂଶ

୧୯୬୦ : ତୁଳସୀ ରାମାୟଣ (ଦ୍ୱିତୀୟ ସଂସ୍କରଣ),
ରାଷ୍ଟ୍ରଭାଷା ସମବାୟ ପ୍ରେସ୍, କଟକ-୧,
ପ୍ରକାଶକ : ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର,କଟକ-୨

୧୯୬୩ : ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ (ପ୍ରଥମ ସଂସ୍କରଣ)
(ସଂ).ଲକ୍ଷ୍ମୀନାରାୟଣ ପ୍ରେସ୍, କଟକ-୧,
ପ୍ରକାଶକ : ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

## ସହାୟକ ଗ୍ରନ୍ଥସୂଚୀ :


| | | |
|---|---|---|
| ଆଚାର୍ଯ୍ୟ,ପରମାନନ୍ଦ | ୧୯୬୪ : | ରାଧାନାଥଙ୍କ ଅନନ୍ୟ ପ୍ରତିଭା, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର |
| | ୨୦୦୮ : | ପରମାନନ୍ଦ ଆଚାର୍ଯ୍ୟଙ୍କ ପ୍ରବନ୍ଧ (ସଂ) ଡଃ ଗଣେଶ ପ୍ରସାଦ ସାହୁ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର |
| ଆଚାର୍ଯ୍ୟ,ବୃନ୍ଦାବନ ଚନ୍ଦ୍ର | ୧୯୭୦ : | ସତ୍ୟବାଦୀଯୁଗ (ଦ୍ୱିତୀୟ ସଂସ୍କରଣ) ଦାସ ବ୍ରଦର୍ସ, କଟକ |
| ଆଚାର୍ଯ୍ୟ, ସୁଦର୍ଶନ | ୨୦୦୯ : | ଊନବିଂଶ ଶତକର ଦୁଇଟି ବିସ୍ମୃତ ସାହିତ୍ୟ ପତ୍ର ଉତ୍କଳ ମଧୁପ ଓ ପ୍ରଦୀପ ପ୍ରଗତି ଉତ୍କଳ ସଂଘ, ରାଉରକେଲ |
| ଉଦ୍‌ଗାତା, ଗୋବିନ୍ଦଚନ୍ଦ୍ର | ୧୯୮୧ : | ସାହିତ୍ୟ ପ୍ରସଙ୍ଗ ସମ୍ବଲପୁର |
| | ୧୯୮୮ : | କବି ଗଙ୍ଗାଧର ମେହେର, ଓଡ଼ିଶା ସାହିତ୍ୟ ଏକାଡ଼େମୀ ଭୁବନେଶ୍ୱର |
| | ୧୯୯୨ : | କାବ୍ୟଶିଳ୍ପୀ ଗଙ୍ଗାଧର ସମ୍ବଲପୁର |
| | ୧୯୯୭ : | ଅଳଙ୍କାର–ପ୍ରସଙ୍ଗ (ଚତୁର୍ଥ ସଂସ୍କରଣ) |
| | (୧୯୭୮) | ଫ୍ରେଣ୍ଡସ୍ ପବ୍ଲିଶର୍ସ କଟକ –୨ |
| କବି, ଅସିତ | ୧୯୭୨ : | ତପସ୍ୱିନୀ ଓ କବି ଗଙ୍ଗାଧର ଗ୍ରନ୍ଥମନ୍ଦିର, କଟକ –୨ |
| | ୧୯୯୪ : | ଓଡ଼ିଆ ସାହିତ୍ୟ–ସମାଲୋଚନାର ଇତିହାସ ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ –୨ |
| କର, ବାଉରୀବନ୍ଧୁ | ୨୦୧୦ : | ସଂସ୍କୃତି ଓ ମାନବିକ ମୂଲ୍ୟବୋଧ |
| | ପ୍ରକାଶକ : | ସାରସ୍ୱତ ସାହିତ୍ୟ ସାଂସ୍କୃତିକ ପରିଷଦ ଯାଜପୁର |

ଗୁରୁ, ଗଙ୍ଗାଧର ୧୯୬୯ : ରାଜର୍ଷି ରାମଚନ୍ଦ୍ର
ନବଜୀବନ ପ୍ରେସ୍
କଟକ – ୨
ତ୍ରିପାଠୀ, ଶିବ ପ୍ରସାଦ ୨୦୦୯ : ମେହେର ସାହିତ୍ୟ ସଂପଦ
ଓଡ଼ିଶା ବୁକ୍‌ଷ୍ଟୋର୍
କଟକ–୨
ଦାଶ, ଗୋପବନ୍ଧୁ ୧୯୪୦ : ବନ୍ଦୀର ଆତ୍ମକଥା (୩ୟ ସଂ)
ସତ୍ୟବାଦୀ ପ୍ରେସ୍, କଟକ
୧୯୪୨ : କାରା କବିତା (ଦ୍ୱିତୀୟ ମୁଦ୍ରଣ)
ସତ୍ୟବାଦୀ ପ୍ରେସ୍, କଟକ
୨୦୦୩ : ଉତ୍କଳମଣି ଗୋପବନ୍ଧୁ ଗ୍ରନ୍ଥାବଳୀ
(୧ମ ଖଣ୍ଡ)
(ସଂ) ଦେବେନ୍ଦ୍ର କୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ–୨
ଦାଶ, ଗୌରାଙ୍ଗ ଚରଣ ୨୦୦୬ : ସଂସ୍କୃତି, ଜଗତୀକରଣ ଓ ମଂଚ
ରାଜନୀତି
ପ୍ରାଚୀସାହିତ୍ୟ ପ୍ରତିଷ୍ଠାନ, କଟକ–୨
୨୦୦୮ : ଗୋପାଳ ଚନ୍ଦ୍ର ପ୍ରହରାଜ
(୧୯୯୫) ଓଡ଼ିଶା ସାହିତ୍ୟ ଏକାଡ଼େମୀ
ଭୁବନେଶ୍ୱର
୨୦୦୯ : ବିତର୍କ ଓ ବ୍ୟାଖ୍ୟାନ
ସରସ୍ୱତୀ, ଗୌରୀନଗର, ଭୁବନେଶ୍ୱର
ଦାଶ, ଦେବେନ୍ଦ୍ର କୁମାର ୧୯୯୫ : ଗଙ୍ଗାଧର : କବିତା ଓ କବି ଆତ୍ମା
ପ୍ରଗତି ଉତ୍କଳ ସଂଘ,
ରାଉରକେଲା
୨୦୦୫ : ଉତ୍କଳ ସମ୍ମିଳନୀ (ସଂ)
(୧୯୦୩–୧୯୩୬)
: ପ୍ରଥମ ଖଣ୍ଡ
ପ୍ରଗତି ଉତ୍କଳ ସଂଘ, ରାଉରକେଲା
ଦାଶ, ଶିବପ୍ରସାଦ ୧୯୬୨ : ସମ୍ବଲପୁର ଇତିହାସ
ବିଶ୍ୱଭାରତୀପ୍ରେସ୍, ସମ୍ବଲପୁର
ଦାସ, ଗଗନେନ୍ଦ୍ରନାଥ ୧୯୯୩ : ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ–୨
ଦାଶ, ଦାଶରଥୀ ୧୯୭୩ : କାବ୍ୟ ସମ୍ବାଦ
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ –୨

| | | |
|---|---|---|
| | ୧୯୭୮ : | କବିସୂର୍ଯ୍ୟ କାବ୍ୟବିଭା<br>ଅଗ୍ରଦୂତ, କଟକ |
| | ୧୯୯୩ : | ବିବିଧ ପ୍ରସ୍ତାବ<br>ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ–୨ |
| | ୧୯୯୬ : | ସାହିତ୍ୟ ବିବେକ<br>ଅଗ୍ରଦୂତ, କଟକ |
| ନନ୍ଦ, ଫଣୀନ୍ଦ୍ର ଭୂଷଣ | ୨୦୦୨ : | ସମ୍ବଲପୁର ହିତୈଷିଣୀ : ଏକ ଅଧ୍ୟୟନ,<br>ଅପୂର୍ବା, ଭୁବନେଶ୍ୱର |
| | ୨୦୦୭ : | ସାର୍ ସୁଢ଼ଳଦେବ,<br>ନବୋଦୟ ପ୍ରକାଶନ, କଟକ–୨ |
| | ୨୦୦୮ : | ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ<br>ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର |
| | ୨୦୧୨ : | ଜଳନ୍ଧର ଦେବ ଗ୍ରନ୍ଥାବଳୀ (ସଂ)<br>କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ–୨ |
| ନନ୍ଦଶର୍ମା, ଗୋପୀନାଥ | ୨୦୧୧ : | ପଣ୍ଡିତ ଗୋପୀନାଥ ନନ୍ଦ ଗ୍ରନ୍ଥାବଳୀ<br>(ପ୍ରଥମ ଭାଗ)<br>(ସଂ) ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ<br>ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ–୨ |
| ନାୟକ, ଭରତଚନ୍ଦ୍ର | ୧୯୬୬ : | ମୋର ପୂର୍ବସ୍ମୃତି କଥା<br>ନବଜୀବନ ପ୍ରେସ୍, କଟକ |
| ନାଏକ, ସୁଦାମ | ୨୦୧୧ : | ସୁବର୍ଣ୍ଣପୁର ଇତିହାସ<br>ରାଜ୍ୟ ସଂସ୍କୃତି ଓ ପର୍ଯ୍ୟଟନ ବିଭାଗ<br>ଭୁବନେଶ୍ୱର |
| ପଟ୍ଟନାୟକ, ଦେବୀପ୍ରସନ୍ନ | ୧୯୫୭ : | ଶିବଲିପି<br>ବିଶ୍ୱଭାରତୀ ଗବେଷଣା ବିଭାଗ,<br>ଶାନ୍ତିନିକେତନ |
| | ୧୯୮୪ :<br>(୧୯୬୫) | ସାହିତ୍ୟବୀକ୍ଷା<br>ଗ୍ରନ୍ଥମନ୍ଦିର, କଟକ |
| ପଟ୍ଟନାୟକ, ମଦନମୋହନ | ୨୦୦୪ : | ମଦନମୋହନ ରଚନା ସଂଗ୍ରହ,<br>(ସଂ) ଦେବେନ୍ଦ୍ର କୁମାର ଦାଶ<br>ପ୍ରଗତି ଉତ୍କଳ ସଂଘ, ରାଉରକେଲା |
| ପଣ୍ଡା, ଦୀପକ କୁମାର | ୨୦୦୭ : | ସମ୍ବଲପୁର ସମ୍ବଲପୁର<br>ଅଗ୍ନିଶିଖା ପ୍ରେସ୍, ସମ୍ବଲପୁର |
| ପଣ୍ଡା, ବ୍ରଜମୋହନ | ୧୯୬୨ : | ଯୌବନଗାଥା<br>ସମ୍ବଲପୁର |

ପାଢ଼ୀ, ବେଣୀମାଧବ ୧୯୭୧ : ଧୀ ଓ ଧିଷଣା
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ

ପାଢ଼ୀ, ଶଙ୍କର ପ୍ରସାଦ ୨୦୦୪ : ଅକ୍ଷୟ ତାରକା ଚନ୍ଦ୍ରଶେଖର
(୧୯୭୩) ସମ୍ବଲପୁର

ପତି, ପ୍ରଫୁଲ୍ଲ କୁମାର ୨୦୦୭ : ନିଜ କଥା (ଆତ୍ମଚରିତ)
ପ୍ରକାଶକ : ହିମାଂଶୁ ଶେଖର ପତି
ରାଉରକେଲା – ୫

ପତି, ମଧୁସୂଦନ ୨୦୧୧ : ଗଙ୍ଗାଧର କବି ମାନସ ଓ କାବ୍ୟଶିଳ୍ପ
(ସଂ) ଦେବେନ୍ଦ୍ର କୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ–୨

ପୂଜାରୀ, (ଡାକ୍ତର) ଜନାର୍ଦ୍ଦନ ୧୯୬୩ : ସତ୍ ପ୍ରସଙ୍ଗ (ପ୍ରଥମ ସଂସ୍କରଣ)
ବିଶ୍ୱଭାରତୀ ପ୍ରେସ୍, ସମ୍ବଲପୁର

ପ୍ରଧାନ, ବିହାରୀ ୧୯୫୯ : ଅଛୁଆଁ କିଏ ?
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍
ବ୍ରହ୍ମପୁର (ଗଞ୍ଜାମ)

ପାଣିଗ୍ରାହୀ, ନୀଳମାଧବ ୧୯୬୫ : ଭାରତୀୟ ସଂଗୀତ
ସ୍ୱାଧୀନ ପ୍ରେସ୍, ବ୍ରହ୍ମପୁର

୧୯୯୨(କ): ଓଡ଼ିଶାରେ ଉପକୂଳିଆ ପ୍ରଦେଶ
କେବେ ଓ କାହିଁକି ?
ନିସାନ୍ ସାହିତ୍ୟ ସଂସଦ
ସମ୍ବଲପୁର

୧୯୯୨ (ଖ) : ଓଡ଼ିଶା ସହିତ ସମ୍ବଲପୁର
ମିଶ୍ରଣର ଅଜ୍ଞାତ ଦିଗନ୍ତ
ନିସାନ୍ ସାହିତ୍ୟ ସଂସଦ

୧୯୯୪ : ଜ୍ୟୋର୍ତିମୟୀ,
ନିସାନ୍ ସାହିତ୍ୟ ସଂସଦ

ପାଣିଗ୍ରାହୀ, ହଟକିଶୋର ୨୦୦୫ : ସଂସ୍କୃତି ପରିକ୍ରମା
ଅପୂର୍ବା, ଭୁବନେଶ୍ୱର

ବଳ, ଗଙ୍ଗାଧର ୧୯୬୪ : ସାହିତ୍ୟାଲୋକ
ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ୍,
ବିନୋଦବିହାରୀ, କଟକ–୨

ବଳ, ନନ୍ଦକିଶୋର ୧୯୨୭ : ନିର୍ଝରିଣୀ (ପଞ୍ଚମମୁଦ୍ରଣ)
ଉତ୍କଳ ସାହିତ୍ୟ ପ୍ରେସ୍, କଟକ

୧୯୩୩ : ପ୍ରଭାତ ସଙ୍ଗୀତ (ପ୍ରଥମ ମୁଦ୍ରଣ)
ସତ୍ୟବାଦୀ ପ୍ରେସ୍, କଟକ
୧୯୯୭ : ନନ୍ଦକିଶୋର ଗ୍ରନ୍ଥାବଳୀ( ୨ୟସଂ)
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ–୨

ବଡ଼ପଣ୍ଡା, ହରିଶଙ୍କର ୨୦୦୧ : ସ୍ୱଭାବକବିଙ୍କ ମହତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ ।
ଜିଲ୍ଲା ଲେଖକ ପରିଷଦ
ବଲାଙ୍ଗୀର

ବେହେରା, ଚିନ୍ତାମଣି ୧୯୭୫ : ବିଦଗ୍ଧ ପାଠକ
ଜଗନ୍ନାଥ ରଥ, କଟକ
୧୯୯୨ : ସାହିତ୍ୟ ଚିନ୍ତା
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ
୧୯୯୬ : କାବ୍ୟ ଓ କଳାକାର (୪ର୍ଥ ସଂ)
(୧୯୬୬) : ଜଗନ୍ନାଥ ରଥ, କଟକ
୧୯୯୭ : ଚିତ୍ର ଓ ଚରିତ୍ର
ଆର୍ଯ୍ୟ ପ୍ରକାଶନ, କଟକ

ମହାନ୍ତି, ଚିନ୍ତାମଣି ୧୯୧୫ : କଳ୍ପଲତା (ପ୍ରଥମ ସଂସ୍କରଣ)
ହିତୈଷିଣୀ ପ୍ରେସ୍, ବାମଣ୍ଡା

ମହାନ୍ତି, ଶ୍ରୀଚରଣ ୨୦୦୪ : କବିବର ରାଧାନାଥ
ଓଡ଼ିଶା ସାହିତ୍ୟ ଏକାଡ଼େମୀ
ଭୁବନେଶ୍ୱର

ମାନସିଂହ, ମାୟାଧର ୧୯୪୮ : କବି ଓ କବିତା
ଭାରତୀ ବିହାର, କଟକ
୧୯୫୧ : ଓଡ଼ିଆ ସମାଜ ଓ ସାହିତ୍ୟ
ଭାରତୀ ବିହାର, କଟକ
୧୯୯୦ : ଓଡ଼ିଆସାହିତ୍ୟରଇତିହାସ(୫ମସଂ)
(୧୯୭୬) ଗ୍ରନ୍ଥମନ୍ଦିର, କଟକ–୨

ମିର୍ଦ୍ଧା, ହାଡ଼ିବନ୍ଧୁ ୨୦୦୪ : କବି ଗଙ୍ଗାଧର ଓ ତାଙ୍କର କୃତି
ଶ୍ରୀମତୀ କୁଳବତୀ ମିର୍ଦ୍ଧା
ସମ୍ବଲପୁର

ମିଶ୍ର, ଗୋପାଳ ଚନ୍ଦ୍ର ୧୯୬୫ : ଆଧୁନିକ ଓଡ଼ିଆ ସାହିତ୍ୟର ଗତିପଥ,
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ

| | | |
|---|---|---|
| ମିଶ୍ର, ଦୟାନିଧି | ୧୯୮୪ : | ବିରହବଂଶୀ ଓ ଅନ୍ୟାନ୍ୟ କବିତା<br>ଗୋପବନ୍ଧୁ ସାହିତ୍ୟ ମନ୍ଦିର,<br>ଗୋପବନ୍ଧୁ ଭବନ, କଟକ-୧ |
| ମିଶ୍ର, ରବିଶଙ୍କର | ୨୦୦୫ : | ଟୀକା ଓ ଟିପ୍ପଣୀ<br>ଏମ୍.ଆର୍,ପ୍ରେସ୍, ବରଗଡ଼ |
| ମିଶ୍ର, ରାଘବ | ୧୯୯୯ : | ରାଘବ ଗ୍ରନ୍ଥାବଳୀ (ସଂ)<br>ଚୈତନ୍ୟକର୍ମୀ (ବରଗଡ଼) |
| ମିଶ୍ର, ଶ୍ରୀନିବାସ | ୧୯୭୮ : | ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ<br>ବିଦ୍ୟାପୁରୀ, କଟକ |
| ମେହେର, କେଶବଚନ୍ଦ୍ର | ୧୯୬୨ :<br>(୧୯୫୩) | ମେହେର ସାହିତ୍ୟ<br>ଇଉନାଇଟେଡ୍ ବୁକ୍ ହାଉସ୍<br>କଟକ |
| | ୧୯୬୩ : | ରାଧାନାଥ ଓ ଚନ୍ଦ୍ରଭାଗା<br>ସାରସ୍ୱତ ପୁସ୍ତକ ଭଣ୍ଡାର<br>ସମ୍ବଲପୁର |
| | ୧୯୭୧ : | ଜୀବନ ଓ ପ୍ରତିଭା<br>ଓଡ଼ିଶା ବୁକ୍‌ଷ୍ଟୋର, କଟକ-୨ |
| | ୧୯୭୬ : | ଅଙ୍କ ଓ ଅଙ୍କୁର<br>ଓଡ଼ିଶା ବୁକ୍‌ଷ୍ଟୋର, କଟକ-୨ |
| | ୧୯୭୯ : | ସୃଷ୍ଟିର ସ୍ୱର<br>ନାଳନ୍ଦା, କଟକ-୨ |
| | ୧୯୯୨ : | କୀଚକବଧ : ଏକ ଅଧ୍ୟୟନ<br>ସାରସ୍ୱତ ପୁସ୍ତକ ଭଣ୍ଡାର<br>ସମ୍ବଲପୁର |
| | ୧୯୯୨ : | ପ୍ରତିଭା ଓ ପ୍ରତିଭୂ<br>ଓଡ଼ିଶା ବୁକ୍‌ଷ୍ଟୋର୍, କଟକ-୨ |
| | ୧୯୯୮ : | ଯୁଗଲଘାଂ କବି ଗଙ୍ଗାଧର<br>ଗ୍ରନ୍ଥମନ୍ଦିର, କଟକ |
| | ୧୯୯୯ : | କାଳଜୟୀ କବି ଗଙ୍ଗାଧର<br>କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ |
| ମେହେର , ଭଗବାନ | ୧୯୭୭ : | ପିତୃ ପ୍ରସଙ୍ଗ<br>ଓଡ଼ିଶା ବୁକ୍‌ଷ୍ଟୋର, କଟକ |
| ମେହେର, ଗଙ୍ଗାଧର | ୧୯୧୨ : | କବିତା କଲ୍ଲୋଳ (ପ୍ରଥମ ସଂ)<br>ଉତ୍କଳ ପ୍ରେସ୍, କଳିକତା |

୧୯୪୦ : ତପସ୍ୱିନୀ (ଚତୁର୍ଥ ସଂସ୍କରଣ)
ଉତ୍କଳ ସାହିତ୍ୟ ପ୍ରେସ୍, କଟକ
୧୯୪୨ : ପ୍ରଣୟ ବଲ୍ଲରୀ (ଚତୁର୍ଥ ସଂ)
ସତ୍ୟବାଦୀ ପ୍ରେସ୍, କଟକ
୧୯୫୧ : ଗଙ୍ଗାଧର ଗ୍ରନ୍ଥାବଳୀ (୧ମ ସଂ)
(ସଂ) ଭଗବାନ ମେହେର
ବରପାଲି
୧୯୯୮ : ଗଙ୍ଗାଧର ଗ୍ରନ୍ଥାବଳୀ
(ସଂ) ଡ. ମଣୀନ୍ଦ୍ର କୁମାର ମେହେର
ଗ୍ରନ୍ଥ ମନ୍ଦିର, କଟକ – ୨

ମେହେର, ଭଗବାନ ୧୯୭୭ : ପିତୃ ପ୍ରସଙ୍ଗ
ଓଡ଼ିଶା ବୁକ୍‌ଷ୍ଟୋର, କଟକ–୨

ମେହେର, ମଣୀନ୍ଦ୍ର କୁମାର ୨୦୦୬ : ଗଙ୍ଗାଧର ମେହେର : ଜୀବନ ଓ ସୃଜନ ।
ନବଦିଗନ୍ତ
ବିନୋଦବିହାରୀ, କଟକ–୨
୨୦୦୮ : ସୃଜନ ସନ୍ଦେଶ
ଅଗ୍ରଦୂତ, କଟକ

ମେହେର, ରଘୁନାଥ ୧୯୯୩ : ରଙ୍ଗାଜୀବ ଗଙ୍ଗାଧର
ସମ୍ବଲପୁର

ରାଓ, ମଧୁସୂଦନ ୨୦୧୧ : (ସଂ) ଭକ୍ତକବି ମଧୁସୂଦନ ଗ୍ରନ୍ଥାବଳୀ
ଦେବେନ୍ଦ୍ର କୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ–୨

ରାଉତ, ଭୋଳାନାଥ ୧୯୬୨ : ଗଙ୍ଗାଧର ସ୍ମରଣିକା (ସଂ)
ଓଡ଼ିଆ ସାହିତ୍ୟ ସମାଜ
ରେଭେନ୍ସା କଲେଜ, କଟକ

ରାୟ, ରାଧାନାଥ ୧୯୯୮ : (ସଂ) କବିବର ରାଧାନାଥ ଗ୍ରନ୍ଥାବଳୀ
ପ୍ରସନ୍ନ କୁମାର ମିଶ୍ର ଓ ଦେବେନ୍ଦ୍ର କୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ–୨

ରାୟ, ଶଶୀଭୂଷଣ ୧୯୧୫ : ଉତ୍କଳ ପ୍ରକୃତି–(ପ୍ରଥମ ସଂ)
ଉତ୍କଳ ସାହିତ୍ୟ ଯନ୍ତ୍ରାଳୟ
କଟକ
୧୯୪୪ : ଉତ୍କଳର ଋତୁଚିତ୍ର (ଷଷ୍ଠ ମୁଦ୍ରଣ)
କଟକ ଟ୍ରେଡ଼ିଂ କମ୍ପାନୀ

| | | |
|---|---|---|
| | | କଟକ |
| | ୧୯୭୪ : | ପ୍ରବନ୍ଧ ପ୍ରବାହ (ପୁନଃ ମୁଦ୍ରଣ) |
| | | ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର |
| | | କଟକ–୨ |
| ରାୟଗୁରୁ, ମୁକୁନ୍ଦ | ୧୯୫୩ : | ପାଞ୍ଚପୋଇ (୨ୟ ସଂସ୍କରଣ) |
| | | କୋଶଳ କଳା ମଣ୍ଡଳ ପ୍ରେସ୍ |
| | | ବଲାଙ୍ଗୀର |
| ଶେଠ, ଖଗେଶ୍ୱର | ୧୯୫୪ : | ମହାପ୍ରଭୁ (ପ୍ରଥମ ପ୍ରକାଶ) |
| | | ଶାନ୍ତି ପ୍ରିଣ୍ଟିଙ୍ଗ୍ ପ୍ରେସ୍, ବରଗଡ଼ |
| | ୧୯୫୯ : | ଆମେ କ'ଣ ଅଛୁଆଁ ? |
| | | (ପ୍ରଥମ ସଂସ୍କରଣ) |
| | | ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍ |
| | | ବ୍ରହ୍ମପୁର (ଗଞ୍ଜାମ) |
| | ୧୯୬୨ : | ମାତା ମହନ୍ତ (୧ମ ସଂସ୍କରଣ) |
| | | ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍ |
| | | ବ୍ରହ୍ମପୁର (ଗଞ୍ଜାମ) |
| | ୧୯୬୭ : | ଭୋଟ୍ ବିଚାର୍ (୨ୟ ସଂସ୍କରଣ) |
| | | ଭାରତୀ ପ୍ରେସ୍, ଟିଟିଲାଗଡ଼ |
| | ୧୯୭୩ : | ଖଗେଶ୍ୱର ଗ୍ରନ୍ଥାବଳୀ |
| | (୧୯୫୮) | (ପ୍ରଥମ ଭାଗ) |
| | | ସମ୍ବଲପୁର |
| ସାମନ୍ତରାୟ, ନଟବର | ୧୯୫୭ : | ବ୍ୟାସକବି ଫକୀରମୋହନ |
| | | ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର |
| | | କଟକ |
| | ୧୯୫୯ : | ଆଧୁନିକ ଓଡ଼ିଆ ସାହିତ୍ୟର |
| | | ଦିଗ୍‌ଦର୍ଶନ, |
| | | ବାଣୀଭଣ୍ଡାର, କଟକ–୧ |
| | ୧୯୬୦ : | ରାଧାନାଥ ଓ ଚିଲିକା କାବ୍ୟ |
| | | ପ୍ରଗତି ପବ୍ଲିଶର୍ସ, କଟକ–୧ |
| | ୧୯୭୦ : | ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ– |
| | | (ଦ୍ୱିତୀୟ ସଂସ୍କରଣ) |
| | | ନିଉଷ୍ଟୁଡେଣ୍ଟସ୍ ଷ୍ଟୋର୍,କଟକ–୨ |
| | ୧୯୭୫ : | ଗଙ୍ଗାଧର ସାହିତ୍ୟ ସମୀକ୍ଷା– |
| | | (ଦ୍ୱିତୀୟ ସଂସ୍କରଣ) |
| | | ନିଉଷ୍ଟୁଡେଣ୍ଟସ୍ ଷ୍ଟୋର,କଟକ–୨ |

୧୯୭୯ : ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶର ପୃଷ୍ଠଭୂମି ।
ଭୁବନେଶ୍ୱର
୧୯୮୧ : ବଡ଼ଜେନା ସାହିତ୍ୟ ସମୀକ୍ଷା
(୧୯୭୧) ଭୁବନେଶ୍ୱର
୧୯୮୧ : ଓଡ଼ିଆ ବୈଷ୍ଣବ ସାହିତ୍ୟ
(୧୯୫୯) : (ତୃତୀୟ ସଂସ୍କରଣ)
ଭୁବନେଶ୍ୱର
୧୯୮୩ : ଓଡ଼ିଆ ସାହିତ୍ୟର ଇତିହାସ
(୧୯୬୪) ଭୁବନେଶ୍ୱର
୧୯୮୪ : ଫକୀର ମୋହନ ସାହିତ୍ୟ ସମୀକ୍ଷା
ଭୁବନେଶ୍ୱର
୧୯୮୪ : ରାଧାନାଥ ସାହିତ୍ୟ ସମୀକ୍ଷା
ଭୁବନେଶ୍ୱର
୧୯୯୧ : ଓଡ଼ିଆ ପଲ୍ଲୀ ସାହିତ୍ୟ
(୧୯୭୦) ଭୁବନେଶ୍ୱର
୨୦୦୪ : ନନ୍ଦ କିଶୋର ସାହିତ୍ୟ ସମୀକ୍ଷା
(ତୃତୀୟ ମୁଦ୍ରଣ)
(୧୯୬୪) ଓଡ଼ିଶା ସାହିତ୍ୟ ଏକାଡ଼େମୀ
ଭୁବନେଶ୍ୱର

ସାହାଣୀ, ଯୋଗେନ୍ଦ୍ର ୨୦୦୭ : ବିଂଶ ଶତାବ୍ଦୀର ବଲାଙ୍ଗୀର
ପ୍ରକାଶକ : ଶ୍ରୀ ଚମ୍ପେଶ୍ୱର ସାହାଣୀ
କ୍ଲବ୍ ପଡ଼ା, ବଲାଙ୍ଗୀର

ସାହୁ, ଖଗେଶ୍ୱର ୧୯୪୦ : ଜୀରାକୂଳେ (ପ୍ରଥମ ମୁଦ୍ରଣ)
ନବଭାରତ ପ୍ରେସ୍, କଟକ
୧୯୪୨ : ମାଳିକା (ପ୍ରଥମ ସଂସ୍କାରଣ)
........
୧୯୫୦ : ଜୀବନ ସାଥୀ (ପ୍ରଥମ ମୁଦ୍ରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍
ବ୍ରହ୍ମପୁର (ଗଞ୍ଜାମ)
୧୯୫୯ : ବ୍ରଜ ବିରହ (ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍
ବ୍ରହ୍ମପୁର (ଗଞ୍ଜାମ)

୧୯୬୦ : ସାଉଁଟା ଫୁଲ (ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍
ବ୍ରହ୍ମପୁର (ଗଞ୍ଜାମ)

୧୯୬୧ : ତ୍ୟାଗବୀର (ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍
ବ୍ରହ୍ମପୁର (ଗଞ୍ଜାମ)

ସାହୁ, ରାମକୃଷ୍ଣ (ଡାକ୍ତର) ୨୦୦୪ : ରାମକୃଷ୍ଣ କାବ୍ୟ ସଂଗ୍ରହ
(ସଂ) ଦେବେନ୍ଦ୍ର କୁମାର ଦାଶ
ଓଡ଼ିଆ ଗବେଷଣା ପରିଷଦ
କଟକ–୧୦

ସେନାପତି, ଫକୀରମୋହନ ୨୦୦୦ : ଫକୀରମୋହନ ଗ୍ରନ୍ଥାବଳୀ
(ପ୍ରଥମ ଖଣ୍ଡ)
(ସଂ) ଡଃ କୃଷ୍ଣଚରଣ ବେହେରା ଓ
ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ–୨

୨୦୦୨ : ଫକୀର ମୋହନ ଗ୍ରନ୍ଥାବଳୀ
(ଦ୍ୱିତୀୟ ଖଣ୍ଡ)
(ସଂ) ଡଃ କୃଷ୍ଣଚରଣ ବେହେରା ଓ
ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ–୨

୨୦୦୮ : ଫକୀର ମୋହନ ଗ୍ରନ୍ଥାବଳୀ
(ତୃତୀୟ ଖଣ୍ଡ)
(ସଂ) ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ–୨

୨୦୧୦ : ଫକୀରମୋହନ ସେନାପତିଙ୍କ
ଆତ୍ମଚରିତ
(ସଂ) ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ
ନ୍ୟାସନାଲ୍ ବୁକ୍‌ଟ୍ରଷ୍ଟ, ଇଣ୍ଡିଆ



No. XI.

All communications should be addressed to the Director of Public Instruction, Bengal, Writers' Buildings, Calcutta.

No. 2449

From

Personal Assistant to
THE DIRECTOR OF PUBLIC INSTRUCTION, BENGAL,

To

Babu Swapneswar Das.,
Head Pandit, Middle English School
District Sambalpur.

Calcutta, the 18 February, 1909

Sir,

In continuation of this office No.2245, dated the 10th December 1908, I have the honour to inform you that your book "Kosankura" has been approved as a library book under Bengal Government Notification No.516, dated the 27th January 1909. The price of the book has been ... to three annas.

I have the honour to be,
Sir,
Your most obedient servant,

L. M. Mukherji

Offg. Personal Assistant to
Director of Public Instruction, Bengal.

('କୋଷାଙ୍କୁର' ଅଭିଧାନ ସଂପର୍କରେ ମନ୍ତବ୍ୟ)

GOVERNOR'S CAMP,
ORISSA.

Pandit Swapneswar Das Kabibhusan has been known to me for a long time as a respected Pandit of the Sambalpur district who has devoted his life to Oriya literature and is interested in Ayurvedic medical practice. I wish him well for the future on this my last visit to Sambalpur.

W. H. Lewis

Camp Sambalpur.
March 15th 1946

(ଓଡ଼ିଶାର ଭୂତପୂର୍ବଲାଟ୍ ମାନ୍ୟବର ଲୁଇସ୍ ସାହେବଙ୍କ ମନ୍ତବ୍ୟ)

CHIEF MINISTER
ORISSA



Bhubaneswar,
The 23rd November '60.
24th 60

No. 1727 CM

Dear Friend,

Many thanks for your kind invitation to the marriage ceremony of your grandson, Sriman Nityanand with Srimati Yashobanti. I wish them a happy and prosperous married life.

Yours sincerely,

(H. Mahtab).

Sri Swapneswar Das,
No.3, Cantonment Road,
Cuttack.

(ଡକ୍ଟର ହରେକୃଷ୍ଣ ମହତାବଙ୍କ ପତ୍ର)

## ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

ମାନନୀୟ ଶ୍ରୀଯୁକ୍ତ ସ୍ୱପ୍ନେଶ୍ୱର ଦାଶ ମହୋଦୟ,

ସାରସ୍ୱତ ଆରାଧନାରେ ଭବଦୀୟ ସମଗ୍ର ଜୀବନ ଯାପିତ ହୋଇଅଛି । ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତିବିଧାନ ଲାଗି ଆପଣ ବହୁ ବର୍ଷ ଧରି ନାନା କ୍ଷୁଦ୍ର-ବିଶାଳ ଗ୍ରନ୍ଥ ପ୍ରଣୟନ କରିଅଛନ୍ତି । ଓଡ଼ିଶାର ପଶ୍ଚିମ ସୀମାନ୍ତ ଅଞ୍ଚଳରେ ରହି ଆପଣ କେବଳ ଯେ ହିନ୍ଦୀ ଭାଷାରେ ଗଭୀର ବ୍ୟୁତ୍ପତ୍ତି ଲାଭ କରିଅଛନ୍ତି, ତାହା ନୁହେଁ, ତାହାର ମଧୁମୟ ଫଳ ସ୍ୱରୂପ ହିନ୍ଦୀ ସାହିତ୍ୟ ଗଗନର ଭକ୍ତି-ରସୋଜ୍ଜ୍ୱଳ କାବ୍ୟ-ଜ୍ୟୋତିଷ୍କ, 'ରାମଚରିତ ମାନସ'ର ପୂର୍ଣ୍ଣାଙ୍ଗ ଅନୁବାଦ କରି ଓଡ଼ିଶାର ଅଗଣିତ ପାଠକଙ୍କୁ ଭକ୍ତିରସ ଓ କାବ୍ୟରସ ଯୁଗପତ୍ ପରିବେଷଣ କରିବାକୁ ଦୃଢ଼ପ୍ରୟାସୀ ହୋଇଅଛନ୍ତି । ଏହା ବ୍ୟତୀତ, 'କାମାୟନୀ'ର ଓଡ଼ିଆ ଅନୁବାଦ ଦ୍ୱାରା ଅନ୍ୟଭାଷାର ରସ-ସମ୍ପଦରେ ଓ ଭାବ-ବୈଚିତ୍ର୍ୟରେ ମାତୃଭାଷାର ଶ୍ରୀ ସମ୍ପାଦନ ତଥା ଗୌରବ ବର୍ଦ୍ଧନ କରିବାକୁ ଆପଣ ଏକାନ୍ତ ଯତ୍ନଶୀଳ ହୋଇଅଛନ୍ତି । ପରନ୍ତୁ, ଏହି ସମସ୍ତ ଦାନ ତୁଳନାରେ ଓଡ଼ିଆ ତାନ୍ତ୍ରିକ ସାହିତ୍ୟକୁ, ବହୁ ବର୍ଷ ସାଧନାର ସିଦ୍ଧି ସ୍ୱରୂପ, 'ବୈଦ୍ୟକଳ୍ପଦ୍ରୁମ' ନାମକ ବୃହଦାକାର ଗ୍ରନ୍ଥର ପ୍ରଣୟନ ହିଁ ଆପଣଙ୍କର ସର୍ବୋତ୍କୃଷ୍ଟ ଦାନ । ଏହି ଗ୍ରନ୍ଥରେ ଆପଣଙ୍କ ବହୁଦର୍ଶିତା, ବିଷୟ ନିର୍ବାଚନ କୌଶଳ ଓ ତତ୍ତ୍ୱବୋଧର ବିମଳ ପ୍ରକାଶ ଆପଣଙ୍କ ଲେଖନୀର ସାର୍ଥକତା ଓ ପରିଶ୍ରମର ଅନବଚ୍ଛିନ୍ନତାର ସ୍ପଷ୍ଟ ପ୍ରମାଣ ପ୍ରଦାନ କରୁଅଛି । ଆଜି ଏହି ନିଖିଳ ଉତ୍କଳ ଲେଖକ ସମ୍ମେଳନରେ ଆପଣଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରି ଓଡ଼ିଶା ସାହିତ୍ୟ ଏକାଡେମୀ ନିଜକୁ ଗୌରବାନ୍ୱିତ ମନେ କରୁଅଛି ।

ସମ୍ପାଦକ

ସଭାପତି

# ସମ୍ବଲ ମଙ୍ଗଳା ।



ପଣ୍ଡିତ ଶ୍ରୀ ସ୍ୱପ୍ନେଶ୍ୱର ଦାଶ କବିଭୂଷଣଙ୍କ

ଦ୍ୱାରା

ସଙ୍କଳିତ ଓ ପ୍ରକାଶିତ ।



Printed by Pandit S. Das
at the
SADHANA PRESS
SAMBALPUR

1923

ମୂଲ୍ୟ—ଦୁଇପଣା ମାତ୍ର ।

# ଅନ୍ତ୍ୟେଷ୍ଟି ଯାଗ ।

ସମ୍ବଲପୁର ସ୍ୱର୍ଗୀୟ ମହାରାଜାଙ୍କ ଶୁଦ୍ଧଶ୍ରାଦ୍ଧ କ୍ରିୟା



ଲେଖକ ଓ ପ୍ରକାଶକ

ଶ୍ରୀସ୍ୱପ୍ନେଶ୍ୱର ଦାଶ କବିଭୂଷଣ



Printed by Babu Sribatsa Das
at The Sadhana Press
BARGARH
1937

# କବିତା-ଝଟିକା

ଶ୍ରୀ ସ୍ୱପ୍ନେଶ୍ୱର ଦାଶ କବିଭୂଷଣଙ୍କ ଦ୍ୱାରା
ବିରଚିତ ଓ ପ୍ରକାଶିତ



ପ୍ରଥମ ସଂସ୍କରଣ
୧୯୫୬

ମୂଲ୍ୟ ୫୦/ ଆଠଅଣା ମାତ୍ର

# କର୍ମବୀର ବାଲୁକି ଦାଶ

---

ଶ୍ରୀ ସ୍ୱପ୍ନେଶ୍ୱର ଦାଶ

କବିଭୂଷଣଙ୍କ ଦ୍ୱାରା ବିରଚିତ

ଶ୍ରୀ ବିଜୟକେତନ ଦାଶଙ୍କ

ଦ୍ୱାରା ପ୍ରକାଶିତ

୧୯୫୭

ମୂଲ୍ୟ ୪ ୦ ୫ ଦାରଷଣା ମାସ

# ଗାନ୍ଧୀବୋଲି

ଶ୍ରୀ ସ୍ୱପ୍ନେଶ୍ୱର ଦାଶ କବିଭୂଷଣଙ୍କ ଦ୍ୱାରା
ଅନୁବାଦିତ
ଓ
ପ୍ରକାଶିତ

୧୯୫୮

ମୁଦ୍ରାକର
ଶ୍ରୀ ଚିନ୍ତାମଣି ମିଶ୍ର, ନବଜୀବନ ପ୍ରେସ୍, କଟକ—୨

ମୂଲ୍ୟ ପଚିଶ ନୂଆପଇସା ମାତ୍ର

ସ୍ୱର୍ଗୀୟ ହିନ୍ଦୀ କବି ଜୟଶଙ୍କରଙ୍କର କୃତ୍ୟ

# ଆଁସୁ ବା ଅଶ୍ରୁ

ପଦ୍ୟାନୁବାଦକ—ଶ୍ରୀ ସ୍ୱପ୍ନେଶ୍ୱର ଦାଶ, (କବିଭୂଷଣ)

ପ୍ରକାଶକ—

ଶ୍ରୀ ବିଜୟକେତନ ଦାଶ

୧୯୫୯—

ମୁଦ୍ରାକର—
ଶ୍ରୀ ଚିନ୍ତାମଣି ମିଶ୍ର,
ନବଜୀବନ ପ୍ରେସ,
କଟକ—୨

ମୂଲ୍ୟ— ଛୟଳଶ ନୂଆ ପଇସା

# ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ

(ମୂଳ ସଂସ୍କୃତ ଶ୍ଳୋକ ଓ ପଦ୍ୟାନୁବାଦ)

ଲେଖକ:—
କବିଭୂଷଣ ଶ୍ରୀ ସ୍ୱପ୍ନେଶ୍ୱର ଦାଶ

ପ୍ରଥମ ସଂସ୍କରଣ
୧୯୬୩

ପ୍ରକାଶକ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର
ଭୁବନେଶ୍ୱର

ମୂଲ୍ୟ ଟ ୫.୦୦ ପାଞ୍ଚ ଟଙ୍କା ମାତ୍ର



ଶ୍ରୀ ଦୀପ୍ତିରଞ୍ଜନ ଶେଠ

ଓଡ଼ିଆ ଜନମାନସରୁ ଧୀରେଧୀରେ ଅନ୍ତର୍ହିତ ହୋଇଯାଉଥିବା ଜଣେ ମହାନ ସାଧକ, କବି, ଭାବୁକ ସ୍ୱର୍ଗତ କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କୁ ଲୋକଲୋଚନରେ ସଫଳଭାବରେ ପୁନଃପ୍ରତିଷ୍ଠିତ କରିଥିବା ଦୀପ୍ତିରଞ୍ଜନ ଶେଠଙ୍କୁ ଅଭିନନ୍ଦନ ନଜଣାଇ ରହି ହେଉନି । ବହୁ ଶ୍ରମ ସ୍ୱୀକାର କରି କଠିନ ଅଧ୍ୟବସାୟ ଓ ମେଧାଶକ୍ତିର ପରିଚୟ ଦେଇ ସେ ସ୍ୱପ୍ନେଶ୍ୱର ଦାସଙ୍କ ଜୀବନର ଅନେକ ଅନାବିଷ୍କୃତ ଦିଗକୁ ଆଲୋକିତ କରିଛନ୍ତି । ଜଣେ ଗବେଷକର ଦୂରଦୃଷ୍ଟି, ନିଷ୍ଠା, ଗଭୀର ମନନ ଓ ଅଧ୍ୟୟନଶୀଳତା ତାଙ୍କର ଏହି ପୁସ୍ତକରେ ସ୍ପଷ୍ଟ ପ୍ରତିଫଳିତ ହୋଇଛି । ତାଙ୍କର ସାହିତ୍ୟ ପ୍ରତି ରହିଥିବା ଆନ୍ତରିକତା, ଅଭିରୁଚି ତଥା ଭାବପ୍ରବଣତା ବେଶ୍ ପ୍ରଣିଧାନ ଯୋଗ୍ୟ । ତାଙ୍କ ଭଳି ଜଣେ ନିଷ୍ଠାପର ଯୁବ ସାଧକଙ୍କ ଲେଖନୀ ତୀକ୍ଷ୍ଣ ଓ ସତ୍ୟନିଷ୍ଠ ହେଉ ଏତିକି କାମନା ।

ତାଙ୍କର ଏହି ଗବେଷଣା ଧର୍ମୀ ପୁସ୍ତକଟି ଓଡ଼ିଶାର ବିଦ୍ୱାନମାନଙ୍କୁ ବେଶ୍ ପ୍ରଚୋଦିତ କରିବ ଏହା ମୋର ଦୃଢ଼ ବିଶ୍ୱାସ ।

**ରମେଶ ଦାସ**
ପୂର୍ବତନ ଓଡ଼ିଆ ପ୍ରାଧ୍ୟାପକ,
ବିଜେବି ମହାବିଦ୍ୟାଳୟ, ଭୁବନେଶ୍ୱର